# ଜୀବନର
# ଜୀବନ କାହାଣୀ



ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

**ଜୀବନର ଜୀବନ କାହାଣୀ**

ରଚନା : ବିନୟକୃଷ୍ଣ ପଟ୍ଟନାୟକ

ଅଙ୍କନ : ଅସିତ୍ ଦାସ

ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ଼୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧

ଅକ୍ଷରସଜ୍ଜା : ଓରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।
ମୁଦ୍ରଣ

ସହଯୋଗ ରାଶି : **ତିନି ଟଙ୍କା ମାତ୍ର**

ପ୍ରକାଶ କାଳ : ଜାନୁଆରୀ ପହିଲା, ୧୯୯୭

ଏହି ପୁସ୍ତିକାଟି ' **ଖୁସିରେ ପଢିବା ଅଭିଯାନ** ' (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା ପାଇଁକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

● **Life Story of Life** ● Author - Binaya Krushna Pattanayak ● Illustration - Asit Das ● Published by B.G.V.S., Orissa for Jan Vachan Andolan ● Price - Rs. 3.00 ● Publication Period - 1st Janauary 1997.



ପ୍ରିୟ ଜୀବନ୍ତ ବନ୍ଧୁମାନେ,

ସମସ୍ତଙ୍କୁ ମୋର ଜୀବନ୍ତ ଶୁଭେଚ୍ଛା । ମୋ ନାଁ ଜୀବନ । ତୁମେ ଚମକି ପଡୁଛ କି ? ମୁଁ ତୁମ ନିଜ ଭିତରୁ କହୁଛି । ବାହାରେ ତୁମ ଚାରିପାଖରୁ କହୁଛି । ଗଛଲତା, ପଶୁପକ୍ଷୀ, ମଣିଷ, କୀଟପତଙ୍ଗ, ଅଣୁଜଗତ ... ଏମିତି ଯିଏ ବି ଜିଇଁଛି, ତା' ଭିତରୁ କହୁଛି । ତୁମ ପାଇଁ ଏହା ଏକ ନୂଆ ଅନୁଭୂତି । ନୁହେଁ ? ତୁମେମାନେ ମୋତେ କୌଣସି ନିର୍ଦ୍ଦିଷ୍ଟ ରୂପରେ ଦେଖି ପାରୁନାହଁ ।

ଆମ୍ବଗଛ, କୁକୁର, ପିମ୍ପୁଡ଼ି, ମଶା, ଚିଲ, ବୁଢ଼ୀ ... ଆଦିଙ୍କର ନିର୍ଦ୍ଦିଷ୍ଟ ରୂପ ଅଛି । ମୋର କୌଣସି ନିର୍ଦ୍ଦିଷ୍ଟ ଭାଷା ବି ନାହିଁ । ଯେପରି ଅଲଗା ଅଲଗା ଅକ୍ଷରରେ ଲେଖିବା,

ଅଲଗା ଭାଷାରେ କହିବା, ଗାଇବା, ଇତ୍ୟାଦି । କିନ୍ତୁ ମୁଁ ମୋ ମନ କଥାକୁ ଅଲଗା ଉପାୟରେ ପ୍ରକାଶ କରିପାରେ । ମୁଁ ତୁମ ମଣିଷମାନଙ୍କୁ ଏ କଥା କହିବା ପାଇଁ ତୁମର ଜଣେ ସାଥିକୁ ତା'ଭିତରୁ କେଞ୍ଚିଲି । ସେ ମୋ ବିଷୟରେ ଯାହା ଯାହା ଜାଣିପାରିଲା ଓ ବୁଝିପାରିଲା, ତାହା ନିଜ ଭାଷାରେ ଲେଖିଦେଲା ।

ଏହା ତୁମକୁ ଯଥେଷ୍ଟ ଲାଗିବ ନାହିଁ । କିନ୍ତୁ ତୁମେ ଯଦି ମୋ ବିଷୟରେ ଅଧିକ ଭାବିବ ଓ ଜାଣିବାକୁ ଚାହିଁବ, ତେବେ ମୁଁ ତୁମକୁ ବି ଅଧିକରୁ ଅଧିକ କଥା ଜଣାଇବି । ମୁଁ ଦେଖେ-କିଏ ଜାଣିବା ପାଇଁ ଆଗ୍ରହୀ । ମୁଁ ଯେଉଁଠାରେ ରହେ, ସେ ନିଜ ଢ଼ାଞ୍ଚାରେ ରୂପ ନିଏ, କଥା କହେ, ଗୀତ ଗାଏ, ଖେଳେ, ଖାଏ, ପିଏ ଇତ୍ୟାଦି । ଆମ୍ବ ଗଛଟିଏ ତ ତୁମେ ଦେଖିଛ । ସେ ଦିନେ ଟାକୁଆ ରୂପରେ ଥିଲା ।

ମୁଁ ତା' ଭିତରେ ସେତେବେଳେ ବି ଥିଲି । ମାଟିରେ ପଡ଼ିବାରୁ ସେ ବଞ୍ଚିବାର ଉପାଦାନ ( ମାଟି, ପାଣି, ସାର, ପବନ ...) ପାଇଲା । ଶାଖା ମେଲି ଏତେ ବଡ଼ ଗଛର ରୂପ ନେଲା । ତୁମେ ବି କ'ଣ ଆଗରୁ ଏପରି ଥିଲ ? ମା' ପେଟ ଭିତରୁ ଦିନେ ବାହାରିଥିଲ । କିନ୍ତୁ ମୁଁ ତୁମ ଭିତରେ ଅନେକ ଆଗରୁ ଥିଲି । ମା' ଅଣ୍ଡା ଭିତରେ ହିଁ ଲୁଚି ରହିଥିଲି । କ୍ରମେ ମା' ଦେହରୁ ଖାଦ୍ୟ ଶୋଷି ଅଣ୍ଡାଟି ତୁମ ଦେହର ରୂପ ନେଲା । ସେପରି ପ୍ରତ୍ୟେକ ଜୀବନ୍ତ ବସ୍ତୁର ଅଦଳ ବଦଳ ଚାଲିଥାଏ । ମତେ ଯିଏ ସାଇତିକି ରଖିପାରେ, ସେ ଜିଇଁ ରହି ହସି, ଖେଳି, ଖୁସିରେ ବଢ଼େ । ଯିଏ ପାରେ ନାହିଁ, ତା କାଳ ସେଇଠି ପୂରେ ।

ମୁଁ ଆଜି କାହିଁକି କହୁଛି ତା' ତ ତୁମେ ଜାଣିଥିବ । ଆଜି ଯାଏଁ ଯେତେ ରକମର ଜୀବଙ୍କ ଖୋଳରେ ମୁଁ ରହିଛି, ସେ ସମସ୍ତଙ୍କୁ ବୁଝିବାକୁ ଚେଷ୍ଟା କରିଛି । ଗଛଲତା, କୀଟ ପତଙ୍ଗ, ପଶୁପକ୍ଷୀ ଆଦି ସମସ୍ତେ । ମୋ ବିଷୟରେ ସମସ୍ତେ ଜାଣନ୍ତି ଓ ଜଗିରଖି ଚଳନ୍ତି । କିନ୍ତୁ କେହି ବି ବିଶେଷ ଭାବନ୍ତି ନାହିଁ । ସେମାନେ ଏ ସବୁ ବିଷୟରେ ଭାବିବା ପାଇଁ ବିଶେଷ ସମୟ ପାଆନ୍ତି ନାହିଁ । କାରଣ, ସେମାନେ ସୁରକ୍ଷିତ ନୁହନ୍ତି ।

ଭୋକ ହେଲେ ଖାଆନ୍ତି, ପିଅନ୍ତି । ଥକିଗଲେ ଶୋଇପଡ଼ନ୍ତି ; କିନ୍ତୁ ଏଣେତେଣେ ତ ଶୋଇ ପାରିବେନି । ଚଢ଼େଇଟିଏ କ'ଣ ଆଉ ମାଟି ତଳ ଗାତରେ ଶୋଇବ ? ସାପ,

ବିଲୁଆ, କୁକୁର ଏମିତି କେତେ ଜୀବ ତାକୁ ଛକି ବସିଥା'ନ୍ତି । ତେଣୁ ସେ ଗଛଡ଼ାଳ କି କୋରଡ଼ରେ କାଠିକୁଟା ଖଞ୍ଜି ତା'ର ଘର ଗଢ଼େ । ଖାଇବା, ପିଇବା, ଶୋଇବା, ଛଡ଼ା ନିଜର ବଂଶ ବଢ଼ାଇବା ପାଇଁ ବି ସେମାନେ ସମୟ ଦିଅନ୍ତି । ଏତିକି କାମ କରୁ କରୁ ତାଙ୍କ ଆୟୁଷ ପୂରିଯାଏ । ତାଙ୍କ ମୁଣ୍ଡ ତାଙ୍କୁ ଅଧିକ କଥା ଭାବିବାକୁ ଦିଏ ନାହିଁ ।

ଏପରିକି ସିଂହ, ହାତୀ ପରି ଟାଣୁଆ ଜୀବ ବି ଏତିକିରେ ଲାଖିଯା'ନ୍ତି । ତେଣୁ ଜୀବଜନ୍ତୁ , ଗଛଲତା ଆଦି ସମସ୍ତେ ବିପଦରେ ପଡ଼ନ୍ତି । ସେମାନେ ଜିଇଁବା ପାଇଁ ଯେଉଁ ଖାଦ୍ୟ, ବାସ ଓ ପରିବେଶ ଲୋଡ଼ା ସେଥିରେ ସାମାନ୍ୟ ଏପଟସେପଟ ହେଲେ ସେମାନଙ୍କର ଜିଇଁବା ଅସମ୍ଭବ ହୋଇପଡ଼େ । ଏପରିକି କେତେକ ଜୀବଙ୍କର ବଂଶ ଲୋପ ପାଇଯାଏ ।

କିନ୍ତୁ ତୁମେ ମଣିଷମାନେ ମୋର ଅତି ପ୍ରିୟ । ପୃଥିବୀ ମା'ର ଅନେକ ପରଖ ପରେ ତୁମେମାନେ ଜନ୍ମ ନେଇଛ । ତୁମର ଗୋଟିଏ ଗୁଣ ମତେ ଖୁବ୍ ଭଲ ଲାଗେ । ତା' ହେଲା ତୁମର ଆଗ୍ରହ ଓ କୌତୂହଳ । ତୁମେ ସବୁବେଳେ ନୂଆ ନୂଆ କଥା ଜାଣିବାକୁ କେତେ ଖୋଜି ବୁଲ । ଖାଲି ପିଇବା, ଖାଇବା, ଶୋଇବା, ବଂଶ ବଢ଼ାଇବା କାମରେ ତୁମେ ଅଟକି ଯାଇନାହିଁ । ତୁମେ ଖୋଜି ବୁଲୁଛ, ତୁମ ଚାରିପାଖରେ କ'ଣ କ'ଣ ଅଛି, ଆକାଶରେ, ମାଟି ତଳେ, ସମୁଦ୍ରର ପାଣିରେ .... ପୁଣି..... ଏ ସବୁ କେମିତି ହେଲା, କେବେ ହେଲା, କାହିଁକି ହେଲା ଓ ଆଗକୁ କ'ଣ ହେବ ଏ ସବୁ କଥା ଭାବୁଛ ।

ଏହା ଜାଣିବା ପାଇଁ ତୁମେ ହାତପାଆନ୍ତା ଜିନିଷକୁ ଦେଖୁଛ, ଭାଙ୍ଗୁଛ, ପରଖୁଛ, ନୂଆ ଜିନିଷ ଓ ନିୟମ ବାଢ଼ୁଛ - ପ୍ରମାଣ ପାଇଲେ ସମସ୍ତେ ଏହାକୁ ମାନୁଛ । ଏହି ଖୋଜିବାର ଧାରାଟିକୁ ତୁମେ ବିଜ୍ଞାନ ବୋଲି କହୁଛ । ପ୍ରକୃତରେ ଏହା ତୁମର ଏକ ଅତି ଉପଯୋଗୀ କଳା । ଏହି କଳାଟି ଅନ୍ୟ କୌଣସି ଜୀବଜନ୍ତୁ, ଗଛଲତାଙ୍କ ପାଖରେ ଉଧେଇପାରିନି । ଏହା ତୁମ ପାଇଁ ଏକ ଶକ୍ତିଶାଳୀ ଅସ୍ତ୍ରର କାମ କରିପାରୁଛି ।

ତୁମେ ଏହା ଦ୍ୱାରା ଜୀବନରେ କେତେ ନୂଆ କୌଶଳ, କଳକବ୍ଜା, ଉଦ୍ଭାବନ, ଆବିଷ୍କାର ଆଦି କରିପାରିଛ । ଅନ୍ୟ ପଶୁପକ୍ଷୀଙ୍କ ଅପେକ୍ଷା ତୁମେ କେତେ ଖୁସିରେ, ଆରାମରେ ଚଳିପାରୁଛ । ନିଜେ କେତେ ସୁରକ୍ଷା ପାଇପାରୁଛ ! ମୁଁ ଏଥିପାଇଁ ତୁମ

ଭିତରେ ନିଜକୁ ଅଧିକ ସୁରକ୍ଷିତ ରଖିବାର ସୁଯୋଗ ପାଇପାରୁଛି । ତୁମର ଏହି ବିଜ୍ଞାନୀ କଳାଟିକୁ ମୁଁ ଅଭିନନ୍ଦନ ଜଣାଉଛି ।

ତୁମେ ସବୁ ମୋ ବିଷୟରେ ଅଧିକା କଥା ଜାଣିବାକୁ ଚାହୁଁଛ । ଏଥର ସେ ବିଷୟରେ କହୁଛି । ତୁମେ ନିଜକୁ ଚାହଁ ତ । ଦେହର ହାତ, ଗୋଡ଼, ପେଟ, ମୁଣ୍ଡ ଏମିତି କେତେ ଅଙ୍ଗ ରହିଛି । ଏହାଂ ଭିତରୁ କେଉଁଠାରେ ମୁଁ ରହିଛି ? ହାତରେ ? ଛାତିରେ ? ପେଟରେ, ଗୋଡ଼ରେ ନା ମୁଣ୍ଡରେ ? ତୁମେ ଆଶ୍ଚର୍ଯ୍ୟ ହୋଇଯିବଣି ଏ କଥା ଭାବି । ତୁମେ ହୁଏତ ଭାବିବାକୁ ଆରମ୍ଭ କରିବଣି, 'ଜୀବନ' ବୋଲି ଜିନିଷଟା କ'ଣ ? କ'ଣ, କ'ଣ ଦେଖିଲେ ଆମେ ଜୀବନକୁ ଚିହ୍ନିପାରିବା ?

## ଜୀବନ କ'ଣ ?

ପ୍ରିୟ ବନ୍ଧୁ ! ତୁମର ନିଜର ଜୀବନ ଅଛି ବୋଲି ତୁମେ ଜାଣିଛ । ଏଥର ନିଜ ଚାରିପାଖକୁ ଆଖି ପକାଅ । ଏ ବହିଟି ଉପରେ ତ ଆଖି ଆଗ ପଡୁଛି । ଏହାଛଡ଼ା କାଛ, କାଛର ଘଣ୍ଟା, ଛବି, ଛାତ, ଟେବୁଲ, ଟେବୁଲ ତଳେ ଶୋଇଥିବା ବିଲେଇ ନାନୀ , କାଛ କଡ଼ରେ ପିମ୍ପୁଡ଼ିର ଧାର, ଘର କୋଣରେ କଳସରେ ପାଣି, ଝରକା, ଝରକା ବାଟେ ଦିଶୁଥିବା ବାହାରର ଆମ୍ବଗଛ, ଫୁଲ ବଗିଚା, ବଗିଚାରେ ଖେଳୁଥିବା ତୁମ କୁନି ଭଉଣୀ, ବଗିଚାରେ ପାଣି ଦେଉଥିବା ବାପା, ଶାଗ ତୋଳୁଥିବା ବୋଉ, କୁନି ମହୁମାଛି, ପ୍ରଜାପତି, ଦୂରର ଶାଗୁଆ ପାହାଡ଼, ଗଛଲତା, ଗାଈ, ଗଉଡ଼, ପୋଖରୀ ପୁଣି ମୁଣ୍ଡ ଉପରେ ନୀଳଆକାଶ, ଧଳା, କଳା, ଭସା ମେଘ, ଉଡ଼ନ୍ତା ଚଢ଼େଇ .... ଏମିତି କେତେ କ'ଣ ! ତୁମେ ଆଶ୍ଚର୍ଯ୍ୟ ହୋଇଯିବ ଏତେ ରକମର ମନଛୁଆଁ ଜିନିଷଗୁଡ଼ିକ ଦେଖି ।

ଏ ସମସ୍ତଙ୍କର କ'ଣ ଜୀବନ ଅଛି ? ଚଢ଼େଇଟା ଡ଼େଣାକୁ ହଲାଇ ହଲାଇ ଆକାଶରେ ଉଡ଼ିବୁଲୁଛି; କିଚିରି ମିଚିରି କରି କେତେ ମଧୁର ସ୍ୱରରେ ଗୀତ ଗାଉଛି । ଡ଼ାଳକୁ ଡ଼ାଳ ଡ଼େଇଁ କୋଳି, ପୋକ, ଫଳ, ମହୁ ଏମିତି କ'ଣ ଖାଉଛି .... ଏମିତି କେତେ କ'ଣ କରି ଚାଲିଛି । ଏମିତି କେତେ ଜିନିଷ ବିବିଧ ପ୍ରକାରର କାମ କରି ଚାଲିଛନ୍ତି । କିନ୍ତୁ ଦୂର ପାହାଡ଼ଟା କେବେଠୁ ଏମିତିକା ସ୍ଥିର ହୋଇ ଠିଆ ହୋଇ ରହିଛି । ସେ ଟିକିଏ ବି ହଲୁନି । ନୀରବ ହୋଇରହିଛି । କିନ୍ତୁ ପାହାଡ଼ର ପଥର ଖୋଲରୁ ଝରଣାଟିଏ କୁଳୁକୁଳୁ

ଗୀତ ଗାଇ, ତଳକୁ ନାଚି ନାଚି ଧାଉଁଛି । ତେବେ ଏମାନଙ୍କ ଭିତରୁ କିଏ ଜିଇଁଛି ବୋଲି କହିବା ?

ତୁମମାନଙ୍କ ବିଜ୍ଞାନ ଏହି ପ୍ରଶ୍ନଟିର ସଠିକ୍ ଉତ୍ତର ବାହାର କରିଛି ।

କେତେକ ନିର୍ଦ୍ଦିଷ୍ଟ ଗୁଣକୁ ନେଇ ସେ ଆମ ଚାରିପାଖର ସବୁ ବସ୍ତୁକୁ ଦୁଇଟି ସରଳ ଭାଗରେ ବାଣ୍ଟି ଦେଇଛି - ସଜୀବ ଓ ନିର୍ଜୀବ । ଯାହାର ଜୀବନ ଅଛି ସେ ସଜୀବ; ଯାହାର ନାହିଁ ସେ ନିର୍ଜୀବ । ଆମେ କିପରି ଜାଣିବା କାହାର ଜୀବନ ଅଛି ? ଏଥିପାଇଁ ଆମେ କେତୋଟି ନିର୍ଦ୍ଦିଷ୍ଟ ଗୁଣକୁ ଦେଖିବା ।



୧. ବସ୍ତୁଟି ଖିଆପିଆ କରୁଛି କି ? ... କୁକୁର କି ବିଲେଇଟିଏ ଖାଇବା ଜିନିଷଟିଏ ଧରି ଧାଇଁବା ଆମେ ଦେଖିଛେ । ମାଙ୍କଡ଼ ଗଛରୁ ଗଛ ଡେଇଁ ଫଳ, କୋଳି ଆଦି ଖାଉଥାଏ । ଆମେ ତ କେତେ ରକମର ଖାଦ୍ୟ ଖାଉଛେ । କାଛ କଣରେ ଚାଉଳ ବୋହୁଥିବା ପିମ୍ପୁଡ଼ିଙ୍କ ଲମ୍ବା ଧାଡ଼ି ଆମେ ଦେଖୁଛେ । ଗଛଲତା ଖାଆନ୍ତି ନା ନାହିଁ ? ସୂର୍ଯ୍ୟକିରଣ ପଡ଼ିଲା କ୍ଷଣି ଗଛର ପତ୍ର-ଘରେ ରୋଷେଇ ଆରମ୍ଭ ହୋଇଯାଏ । ବାୟୁରୁ ଅଙ୍ଗାରକାମ୍ଳ , ସୂର୍ଯ୍ୟକିରଣ ଓ ମାଟି ତଳୁ ପାଣି ନେଇ ସେ ମିଠେଇ ଦାନା ବନେଇ

ଚାଲେ । ତାକୁ ଖାଇ ଗଛ ଆକାରରେ ବଢ଼େ , ଫୁଲ ଫୁଟେ, ଫଳ ଧରେ । କିନ୍ତୁ ପଥରଟି କ'ଣ ଖାଏ ? ଚଉକି,ଟେବୁଲ, ଖଟ କ'ଣ ଖାଆନ୍ତି ? - ଆମେ କହେ , ସଜୀବ ବସ୍ତୁ ଖାଇପିଇ ପାରେ, କିନ୍ତୁ ନିର୍ଜୀବ ଖାଇପାରେ ନାହିଁ ।

୨. ଏହା ବଢୁଛି କି ? .... ତୁମେ ଦିନେ ଲଙ୍ଗଳା କୁନି ଛୁଆଟିଏ ହୋଇ ଜନ୍ମ ହୋଇଥିଲ । ମା'ଠୁ କ୍ଷୀର ଖାଇ ଚାଲିଲ । କ୍ରମେ ନାନାଦି ଦରବ ଖାଇ ତୁମେ ବଡ଼ପିଲା ହେଲଣି । କାଲିକି ଆହୁରି ବଡ଼ ହୋଇ ବୁଢ଼ୀ କି ବୁଢ଼ା ହେବ । ମଞ୍ଜି ଗଜା ହୋଇ ବଢ଼ି ଚାଲେ ଓ କେତେ ବଡ଼ ଗଛ ଠିଆ ହୋଇଯାଏ । ମା' କୁକୁଡ଼ା ତା' ଅଣ୍ଡାକୁ ଉଷୁମାଏ । ୨୦-୨୧ ଦିନ ପରେ କୁନି କୁନି ଚିଆଁଗୁଡ଼ାକ ଅଣ୍ଡାରୁ ବାହାରନ୍ତି ।

ଖାଇପିଇ ବଢ଼ି ସେମାନେ ପୁଣି ଛୁଆ ସୃଷ୍ଟି କରିପାରନ୍ତି । କୁକୁର, ବିଲେଇ, ଗାଈ, ମୂଷା, ସମସ୍ତେ ଆକାରରେ ବଢ଼ିଚାଲନ୍ତି । ପଶୁପକ୍ଷୀମାନେ ଗୋଟିଏ ନିର୍ଦ୍ଦିଷ୍ଟ ବୟସ ଯାଏଁ ବଢ଼ିପାରନ୍ତି । କିନ୍ତୁ ଗଛଲତା ଶେଷ ହେବା ଯାଏଁ ବଢ଼ିଚାଲନ୍ତି । କିନ୍ତୁ ପଥର କି କଲମ କି ସୂତାଟିଏ ଆକାରରେ ବଢ଼ି ନ ଥାଏ । ତେଣୁ ସଜୀବ ସହିତ ତୁମେମାନେ ବଢ଼ି ପାରିବାର କ୍ଷମତାଟିକୁ ବି ଯୋଡ଼ିଦିଅ ।

୩- ଏହା ବଂଶ ବଢ଼ାଇପାରୁଛି କି ? .... ପିମ୍ପୁଡ଼ି, ମଶା, ମାଛି, ପ୍ରଜାପତି ଆଦି ସମସ୍ତେ ଅଣ୍ଡା ଦିଅନ୍ତି । କିଛି ଦିନ ପରେ ଅଣ୍ଡାରୁ ଛୁଆ ବାହାରି ସେମାନଙ୍କ ସଂଖ୍ୟା ଅନେକ ଗୁଣରେ ବଢ଼ିଯାଏ । ଗାଈ, କୁକୁର, ମଣିଷ, ମୂଷା ଆଦିଙ୍କ ଅଣ୍ଡା ପେଟ ଭିତରେ ବଦଳିଚାଲେ । ଛୁଆ ରୂପରେ କିଛି ଦିନ/ ମାସ ପରେ ଏହା ମା' ପେଟରୁ ବାହାରେ ।

ଗଛଲତା ମଧ୍ୟ ନିଜ ନିଜର ସଂଖ୍ୟା ବଢ଼ାଇବା ପାଇଁ ବିଭିନ୍ନ ଉପାୟ ଅବଲମ୍ବନ କରନ୍ତି । ମଞ୍ଜିରୁ ହେଉ, କନ୍ଦାରୁ ହେଉ, ଚାରା ଦ୍ୱାରା ହେଉ, ବା ଚେର ମାଡ଼ିବା ଦ୍ୱାରା ହେଉ, ସେମାନେ ନିଜ ସଂଖ୍ୟା ବଢ଼େଇ ଚାଲନ୍ତି । ଜୀବାଣୁ, ଭୂତାଣୁ ମଧ୍ୟ ଭାଙ୍ଗି ଭାଙ୍ଗି ନିଜର ସଂଖ୍ୟା ବଢ଼ାଇଚାଲନ୍ତି । କିନ୍ତୁ ଶୁଖିଲା କାଠ, ଟେବୁଲ, ବୋତଲ ବା ପେନ୍‌ସିଲଟିଏ ମାଟିରେ ପୋତିଲେ ଏହା ନିଜେ ସଡ଼ି ଯାଏ । କିନ୍ତୁ ସଂଖ୍ୟା ବଢ଼ିବାର କୌଣସି ସମ୍ଭାବନା ହିଁ ନ ଥାଏ ।

ଏହି ସବୁ ମୂଳ ମଣ୍ଡିକୁ ଆଧାର କରି ତୁମେ କହି ଦେଇପାରିବ ମୁଁ (ଜୀବନ) କେଉଁଠି ଅଛି ବା ନାହିଁ। ମୁଁ ଯେଉଁଠି ଥାଏ, ସେ ଜିନିଷଟି ଯଥେଷ୍ଟ ସତେଜ, ଚଞ୍ଚଳ ଓ ସୁନ୍ଦର ଜଣାପଡ଼େ । ଯାହାଠାରେ ମୁଁ ଯେତେ ତାଜା ଥାଏ, ବସ୍ତୁଟି ମଧ୍ୟ ସେତିକି ଜୀବନ୍ତ ଓ ତାଜା ଜଣାପଡ଼େ । ଯେପରି ଯୁବ ବୟସର ପିଲା, ପଶୁ, ଗଛ ଇତ୍ୟାଦି ।

କିନ୍ତୁ ମୁଁ ମଉଳିବାକୁ ଆରମ୍ଭ କଲେ ପୂରା ବ୍ୟବସ୍ଥାଟି ଭୁଷୁଡ଼ିବାକୁ ଆରମ୍ଭ କରେ । ବସ୍ତୁଟି ଧୀରେ ଧୀରେ ମାନ୍ଦା ଓ ଅସୁନ୍ଦର ଜଣାପଡ଼େ । ଉପର ମଣ୍ଡିଗୁଡ଼ିକୁ ଭିତ୍ତି କରି ତୁମେ ନଇ ବା ଝରଣାଟିକୁ ସଜୀବ ବା ଜୀବନ୍ତ କହିପାରିବ କି ? ତା' ନୁହେଁ । କାରଣ ସେ ନିଜେ କିଛି ବି କରି ପାରି ନ ଥାଏ । ଏଠାରେ ଥିବା ପାଣି ଖାଲୁଆ ଜମି ଆଡ଼କୁ ଗଡ଼ି ଚାଲିଥାଏ । ସଜୀବ ବସ୍ତୁ ନିଜେ ନିଜେ ଅନେକ କାମ କରିପାରେ ।

ତୁମକୁ ବି ନିର୍ଜୀବ ବସ୍ତୁ ଅପେକ୍ଷା ସଜୀବ ବସ୍ତୁଟିଏ ଦେଖିବାକୁ ଭଲ ଲାଗିଥାଏ । ଛନଛନିଆ ଶାଗୁଆ ଗଛଟିଏ କି ଗୁଲୁଗୁଲିଆ ସାଧବବୋହୂ କି ଆକାଶରେ ଉଡୁଥିବା କୁନି ଚଢ଼େଇଟିଏ ଦେଖିଲେ କିମ୍ବା କୋଇଲି, ବଣିର ମଧୁର ସ୍ୱର ଶୁଣିଲେ କେତେ ଖୁସି ଲାଗେ ! କିନ୍ତୁ ଖୁଣ୍ଟା ଶୁଖିଲା ଗଛଟିଏ କି ଟାଙ୍ଗରା ପଡ଼ିଆଟିଏ ଦେଖିଲେ ସେହି ମଜା ବା ଉନ୍ମାଦନା ନ ଥାଏ । ବିରାଟକାୟ ଅଟ୍ଟାଳିକାଟିଏ ଯେତେ ଜାକଜମକରେ ତିଆରି ହୋଇଥିଲେ ଦ୍ୱିତୀୟ, ତୃତୀୟ ଥର ବେଳକୁ ତା'ର ଆକର୍ଷଣଟା ଅନେକ ପରିମାଣରେ କମିଯାଇଥାଏ ।

କିନ୍ତୁ ଶାଗୁଆ ପଡ଼ିଆଟିଏ କି ପଙ୍କୁଆ ଗାଡ଼ିଆଟିରେ ବି ସତେଜତା ଓ ନୂତନତା ଥାଏ କେଜାଣି, ଯେତେ ଦେଖିଲେ ବି ନୂଆ ଲାଗୁଥାଏ, ଖୁସି ଲାଗୁଥାଏ । ବିଶେଷ କରି, ଜୀବନ ଭଲ ପାଏ ଜୀବନକୁ , ଜୀବନ୍ତତାକୁ । ସେଥିପାଇଁ ଯେତେ କଳିତରାଳ, ମାନ ଅଭିମାନ ଥିଲେ ହେଁ ସାରା ମଣିଷ ଜାତି କହେ 'ମଣିଷ ସମାଜ', ' ବସୁଧୈବ କୁଟୁମ୍ବକମ୍ ' । ସଭିଏଁ ମିଳିମିଶି ଖୁସିରେ ଜିଇଁବାକୁ ଚାହାନ୍ତି । ଏହା ହିଁ ହେଉଛି ମୋର (ଜୀବନର) ମହତ୍ତ୍ୱ । ଯେତେ ଆକର୍ଷଣୀୟ ଛବିଟିଏ ଦେଖିଥିଲେ ମଧ୍ୟ, ସଚଟାକୁ ଦେଖିଦେଲେ ସବୁ ତୁଚ୍ଛ ମନେ ହୁଏ । ତୁମ ସମସ୍ତଙ୍କ ଆଖିରେ ଓ ମନରେ (ବିଚାରରେ) .... ମୁଁ (ଜୀବନ) ଏକ ବିଚିତ୍ର ସୃଷ୍ଟି !!

# ମୋର ଚକା ଚକା ଭଉଁରୀ ....

ତୁମେମାନେ ମତେ ବିଭିନ୍ନ ଅବସ୍ଥାରେ ଦେଖିବାକୁ ପାଅ । ଯେ କୌଣସି ସଜୀବ ବସ୍ତୁର ଅବସ୍ଥାରୁ ତୁମେ ମୋ ଅବସ୍ଥାକୁ ଠଉରାଇପାରିବ । ତୁମେମାନେ ଯେମିତି ଚକା ଚକା ଭଉଁରୀ ଖେଳ, ପାଣି ବି ସେମିତି ଭଉଁରୀ ଖେଳ ( ଜଳଚକ୍ର) ଖେଳେ । ମୁଁ ବି ଏହି ଖେଳ ଖେଳେ । ପ୍ରତ୍ୟେକ ସଜୀବ ବସ୍ତୁର ଆରମ୍ଭ ପାଇଁ ମୁଁ ମଞ୍ଜି ଓ ଅଣ୍ଡା ବା ଚାରାଟି ଭିତରେ ଶୋଇ ରହିଥାଏ । ସ୍ୱପ୍ନ ଦେଖୁଥାଏ, କିପରି ଏକ ସୁନ୍ଦର ରଙ୍ଗୀନ ଓ ବଳିଷ୍ଠ ଦେହଟିଏ ପାଇବି । ହସିଖେଳି କାଳ କଟାଇବି ।

ବେଳେବେଳେ ମୋର ସ୍ୱପ୍ନ ଅଧୁରା ରହିଯାଏ । ମଞ୍ଜି, ଅଣ୍ଡା ବା ଚାରାରେ ମୁଁ ଶୋଇ ସ୍ୱପ୍ନ ଦେଖୁଥିଲାବେଳେ କିଏ ମୋତେ ଖାଇ, ଫିଙ୍ଗି, ପୋଡ଼ି ବା ମକଚି ମାରିଦିଏ । ସେତିକିରେ ମୋ ଆୟୁଷ ପୂରିଯାଏ । କିନ୍ତୁ ମୋ ଦେହଖୋଳଟି ବଢ଼ିବା ପାଇଁ ଏକ ଉପଯୁକ୍ତ ପରିବେଶ ପାଇଗଲେ ମୁଁ କ୍ଷଣେ ବି ବିଳମ୍ବ କରେ ନାହିଁ , ଲଗାତାର ବଢ଼ିଚାଲେ । ଶେଷରେ ମୁଁ ମୋ ନିଜ ରୂପ ପାଏ । ପ୍ରଥମେ ମୋ ଦେହ ଛୋଟିଆ ଥାଏ । ମୁଁ ସେତେବେଳେ ଯଥେଷ୍ଟ ବଳିଷ୍ଠ ଥାଏ । ଦେହଟି ଖାଇପିଇ, ନାଚିଗାଇ ବଢ଼ିଚାଲେ । କ୍ରମଶଃ ତା'ର ଯୁବ ଅବସ୍ଥା ହୁଏ ।

ମୋ ସହିତ ସେ ବି ହୃଷ୍ଟପୁଷ୍ଟ , ବଳିଷ୍ଠ , କାମିକା ଓ ସତେଜ ହୁଏ । ନିଜେ ବଂଶ ବଢ଼ାଇବାକୁ ସକ୍ଷମ ହୁଏ । ମୋ ଠାରୁ ଜୀବନ ଅଧିକ ଦେହକୁ ବ୍ୟାପିପାରେ , ଏହା ପରଠୁ ଆରମ୍ଭ ହୁଏ, ତା'ର ବିଲୟର ଧାରା । ସେ କ୍ରମଶଃ ବୁଢ଼ା ହେବାକୁ ଲାଗେ । କ୍ରମେ ମାନ୍ଦା ହେବାରେ ଲାଗେ । ମୋର ଶକ୍ତି ମଧ୍ୟ କମିବାରେ ଲାଗେ । ଶେଷରେ ଦେହଟି ପୂରାପୂରି ଥକିଯାଇ ଆଉ କାମ କରିପାରେ ନାହିଁ । ପୂରା ଅଚଳ ହୋଇଯାଏ - ମରିଯାଏ ।

ଏହା ସହିତ ମୁଁ ମଧ୍ୟ ଲୋପ ପାଇଯାଏ । ମଞ୍ଜି ବା ଅଣ୍ଡା ଅବସ୍ଥାରେ ଯେପରି ମୋର କାଳ ପୂରି ଯାଇଥାଏ । ଏହି ପ୍ରକ୍ରିୟା ପରେ ମଧ୍ୟ ସେଇଆ ହୁଏ । କିନ୍ତୁ ଗୋଟିଏ ଦେହ ମରିବା ଆଗରୁ ସେ ଆଉ କେତୋଟି ନୂଆ ଦେହକୁ ଜନ୍ମ ନେଇ ପାରିଥାଏ । ଫଳରେ ମୂଳ ଦେହଟି ସହିତ ମୁଁ ମରିଗଲେ ବି ନୂଆ କଳିକାଗୁଡ଼ିକରେ ମୁଁ ପଲ୍ଲବି ଉଠିଥାଏ । ଏହା ଗୋଟିଏ ଚକାଭଉଁରୀ ଖେଳ ନୁହେଁ କି ? ଆରମ୍ଭରେ ମୋ ଦେହଖୋଳଟି ଛୋଟ

ଅବସ୍ଥାରେ ଥାଏ, କ୍ରମଶଃ ବଢ଼ି ଯୁବ ଅବସ୍ଥାରେ ପହଞ୍ଚେ, ନୂଆ ନୂଆ ଛୁଆଙ୍କୁ ଜନ୍ମଦିଏ ଓ ନିଜେ ମରି ହଜିଯାଏ । କିନ୍ତୁ ପ୍ରତିଥର ମୋର ଜୀବନଚକ୍ର (ଚକା ଚକା ଭଉଁରୀ ଖେଳ) ଅଲଗା ଅଲଗା ହୁଏ ।

ମୋର ଗତି ଓ ବଦଳା କେଉଁଠି କିପରି ଚାଲେ, ତା'କୁ ଦେଖିବା । ଏଥିପାଇଁ ଆମେ କେତୋଟି ବ୍ୟବସ୍ଥାକୁ ବିଚାର କରିବା । ଗଛଲତାଙ୍କ ମଧ୍ୟରେ ବୁଟ (ମଞ୍ଜିରୁ ଗଛ), ଗୋଲାପ (ଚାରାରୁ ଗଛ) ଓ ପୋଦିନା (ଚେର ମାଡ଼ିଲେ ଚାରା ବଢ଼େ) ଗଛର ଜୀବନଚକ୍ରକୁ ଦେଖିବା । ପଶୁପକ୍ଷୀଙ୍କ ମଧ୍ୟରେ କୁକୁଡ଼ା ପକ୍ଷୀ (ଅଣ୍ଡାରୁ ଛୁଆ) ଓ ସ୍ତନ୍ୟପାୟୀ ମଣିଷ (ମା' ପେଟରୁ ଛୁଆ) ଜୀବନଚକ୍ରକୁ ଦେଖିବା ।

କୀଟପତଙ୍ଗଙ୍କ ମଧ୍ୟରେ ପ୍ରଜାପତି (ଅଣ୍ଡାରୁ ସଁବାଳୁଆ), ମହୁମାଛି (ଅଣ୍ଡାରୁ ଲାର୍ଭା), ଉଭୟଚର ବେଙ୍ଗ (ଅଣ୍ଡାରୁ ବେଙ୍ଗ) ଓ କଙ୍କି (ଗୁଣ୍ଡୁରୀପୋକ ଲାର୍ଭାରୁ କଙ୍କି)ର ଜୀବନଚକ୍ରକୁ ଦେଖିବା । ଏଥିରୁ ତୁମେ ବିଭିନ୍ନ ଜୀବ ଓ ଉଦ୍ଭିଦଙ୍କଠାରେ ମୋର ବିକାଶ/ବିଲୟ ଧାରାକୁ ବିଶ୍ଳେଷଣ କରିପାରିବ । ସମସ୍ତଙ୍କ ଠାରେ ଖୋଳ ଅଲଗା ଅଲଗା । କିନ୍ତୁ ମୋର ଗତି (ଜୀବନଧାରା ) ପ୍ରାୟ ଏକା ପ୍ରକାରର ! ସବୁଠାରେ ଆରମ୍ଭ, ବୃଦ୍ଧି, ବଂଶବୃଦ୍ଧି ଓ ବିଲୟ ହିଁ ଚାଲିଥାଏ । କିନ୍ତୁ ଏହି ପ୍ରକ୍ରିୟା ଭିତରେ କେଁଠ ନୂଆ ନୂଆ ରୂପରେ ମୋର ସଂଖ୍ୟା ବଢ଼ି ଚାଲିଥାଏ ।

## ବୁଟ ଓ ମୁଁ

ତୁମେ ସମସ୍ତେ ବୁଟ ଦେଖିଛ । ତୁମେ ଯେତୋଟି ବୁଟକୁ ଖାଅ ମୋର ସେତିକି ଜୀବନ ନଷ୍ଟ ହୁଏ । ପ୍ରତି ବୁଟ ମଞ୍ଜି ଭିତରେ ମୁଁ ଶୋଇରହି ସ୍ୱପ୍ନ ଦେଖୁଥାଏ । ବେଳେବେଳେ ତୁମେ ମୋତେ ପାଣିରେ ବତୁରାଇଥାଅ । ମୁଁ ଭାବେ ଗଜା ହୋଇ ଶାଖା ମେଲିବା ପାଇଁ ସମୟ ଆସିଗଲା । କିନ୍ତୁ ରାତିକ ବତୁରିଲା ପରେ ବା ଗଜା ବାହାରିଲା ପରେ ତୁମେ ତାକୁ ସିଝାଇ, ଖାଇ ମୋର ଆୟୁଷ ପୂରାଇଦିଅ । କିନ୍ତୁ ଏଥିରେ ମୋର କିଛି ଅଭିଯୋଗ କରିବାର ନାହିଁ । କାରଣ ଏହା ତୁମର ଖାଦ୍ୟ । ତୁମେ ଏହାକୁ ଖାଇବା



ଏକ ସାଧାରଣ କଥା । ତେଣୁ ବୁଟ ଜାତି ପ୍ରସ୍ତୁତ ହୋଇଥାଏ, କିପରି ପ୍ରଚୁର ପରିମାଣରେ ମଞ୍ଜି ସୃଷ୍ଟି କରିବ, ଯେପରି ଗାଈ, ଗୋରୁ, ମଣିଷ, ଚଢ଼େଇ ଆଦି ଖାଇବା ପରେ ବି ଅନେକ ମଞ୍ଜି ବଳି ରହିବ ଓ ତାଙ୍କର ବଂଶ ବଢ଼ିପାରିବ । ଏଥିରେ ଏମାନେ ଏ ଯାଏଁ ସଫଳ ଅଛନ୍ତି । ବୁଟଭାଇର ଜୀବନ ଚକ୍ରକୁ ଦେଖିବା ।

କୁନି କୁନି ବୁଟଗୁଡ଼ିକ ବୁଟଗଛ ପାଇଁ ମୂଳ ଉପାଦାନ । ମାଟି, ପାଣି ଓ ପବନର ପରଶ ପାଇଲେ ମୁଁ ବୁଟ ଭିତରେ ଚେଇଁ ଉଠେ, ସଜାଗ ହୋଇଯାଏ, ଖୁସି ହୋଇ ବଢ଼ିବା ପାଇ ପ୍ରସ୍ତୁତି ହୋଇଯାଏ । ପାଣି ଶୋଷି ହାତୁଆ ଓ ଧେଡ଼ିଆ ବୁଟଟା ଫୁଲି ଉଠେ । ଗୋଲଗାଲିଆ ଦେଖାଯାଏ । ଏହାର ଦେହ ନରମ ହୋଇଯାଏ । ଏହା ଭିତରେ ଅନେକ ପ୍ରକ୍ରିୟା ଆରମ୍ଭ ହୋଇଯାଏ । ପାଣି ଓ ସାର ପାଇ ବୁଟର ଶୋଇଥିବା କୋଷଗୁଡ଼ିକ ଚଞ୍ଚଳ ହୋଇ କାମରେ ଲାଗିଯାନ୍ତି । କୋଷଗୁଡ଼ିକ ମଧ୍ୟରେ ସମ୍ପର୍କ ଓ ଆଦାନ ପ୍ରଦାନ ଆରମ୍ଭ ହୁଏ । ବୁଟ ଖୋଳ ଭିତରେ ଦୁଇଫାଳିଆ ଦାନାଟି ବେଶ୍ ଫୁଲି ମାଂସଳ

ହୋଇଯାଇଥାଏ । ଫାଳଦୁଇଟିର ଯୋଡ଼ା ଢାଞ୍ଚାରେ କୁନି ଗଜାଟିଏ ଦେଖାଦିଏ । ବୁଟର ଛୋଟ ବାଟଟି ଦେଇ ଗଜାଟି ଦୁନିଆର ଆଲୁଅ, ଉତ୍ତାପ ଓ ପବନକୁ ଛୁଏଁ । ଏହା ଆକାରରେ ବଢ଼ିଚାଲେ ।

ଏଥର ବୁଟର ଖୋଳପାଟି ଭିତର ଦାନାର ଚାପ ସହିପାରେ ନାହିଁ । ଏହା ପତଳା ଓ ନରମ ହୋଇଯାଇଥାଏ । ଭିତରୁ ଠେଲାରେ ଫାଟିଯାଏ । ଆଗର ଗଜାଟି ମାଟି ଭିତରକୁ ଚେର ରୂପରେ ମାଡ଼ି ଚାଲିଥାଏ । ଦାନା ଦୁଇଟି ମାଟି ଉପରକୁ ଉଠି ଆସେ । ଏ ସମୟରେ ଏହି ଦାନା ଦୁଇଟି ହିଁ କୁନି ଗଛଟି ପାଇଁ ଖାଦ୍ୟ ଭଣ୍ଡାରର କାମ କରିଥାଏ । ଚେରଟି ମାଟିରେ ପାଣି, ସାର ପାଇବା ପାଇଁ ବାଟ ଖୋଜି ଚାଲିଥାଏ ।

ତାକୁ ଖାଦ୍ୟ ଓ ବଳ ଏହି ରସାଳ ଦାନାଦୁଇଟିରୁ ହିଁ ମିଳିଥାଏ । ଏଥର ମାଟି ଉପରେ ଦୁଇଫାଳ ମଝିରୁ କୁନି ଗଜାଟିଏ ବାହାରିଯାଏ । ଏଥିରୁ ଗଛର ପ୍ରଥମ ପତ୍ର ଦୁଇଟି ପଲ୍ଲବିତ ହୁଏ । ଗଛର ଜୀବନ ଆରମ୍ଭ ହୁଏ । କ୍ରମେ ପତ୍ର ଦୁଇଟି ଶାଗୁଆ ଦିଶେ । ସୂର୍ଯ୍ୟକିରଣ, ବାୟୁରୁ ଅଙ୍ଗାରକାମ୍ଳ ଓ ମାଟିରୁ ପାଣି ସାର ନେଇ ସେ ରୋଷେଇ ଆରମ୍ଭ କରେ । ଗଛଟି ନିଜ ଗୋଡ଼ରେ ଠିଆ ହେବାଯାଏଁ ବୁଟ ଫାଳ ଦୁଇଟି ମା'ଙ୍କ ଦୁଧର କାମ କରିଥାଏ । ଗଛ ସ୍ୱାବଲମ୍ବୀ ହୋଇଯିବା ପରେ ସେ ଝଡ଼ିପଡ଼େ ।

ଗଛଟି ଏଥର ଲଗାତାର ବଢ଼ି ଚାଲିଥାଏ ମାଟି ଉପରେ ଓ ତଳେ । ମୂଳ ଚେରର ଶାଖା ଚେରଗୁଡ଼ିକ ଚାରିଦିଗ ଓ ତଳକୁ ମାଡ଼ିଯାଇ ପାଣି , ସାର ପଠାନ୍ତି । ଉପରେ ପତ୍ର ସଂଖ୍ୟା ବଢ଼ି ବଢ଼ି ରୋଷେଇ ଖାଦ୍ୟର ପରିମାଣ ବଢ଼ିଚାଲେ । ଫଳରେ ଗଛଟି ମନ ଖୁସିରେ ତାର ସ୍ୱପ୍ନକୁ ସାକାର କରିବାରେ ଲାଗେ । ଗଛର ସତେଜତା ସହିତ ମୋର ବି ସତେଜତା ବଢ଼ି ଚାଲିଥାଏ ।

କ୍ରମେ ଗଛଟି ଯୁବ ଅବସ୍ଥାରେ ପହଞ୍ଚେ । ସେତେବେଳକୁ ସେ ଯଥେଷ୍ଟ ହୃଷ୍ଟପୁଷ୍ଟ, ଟାଣୁଆ ଓ ଜୀବନ୍ତ ଦେଖାଯାଉଥାଏ । ଭିତରେ ମୁଁ ବି ଯଥେଷ୍ଟ ଆନନ୍ଦିତ ହେଉଥାଏ । ଏଥର ଗଛଟି ଦେହରେ ଯୌବନ ଖେଳେ । ଶାଗୁଆ ପତ୍ର କୋଳରେ କଡ଼ ଧରି ମନଛୁଆଁ ଫୁଲ ଫୁଟେ । କି ସୁନ୍ଦର ଦିଶୁଥାଏ ସେଗୁଡ଼ିକ । ଗଛ ଦେହରେ ଅଳଙ୍କାର ଲଗାଇଲା ପରି ଦେଖାଯାଉଥାଏ । ଏ ସମୟଟି ଗଛର ସବୁଠୁ ସୁସ୍ଥ ସମୟ ।

ରଙ୍ଗବେରଙ୍ଗ ପ୍ରଜାପତି, ମହୁମାଛି, ଭଅଁର ଏମିତି କେତେ ପୋକ ଜୋକ ଗଛ ପାଖକୁ ଆସନ୍ତି । ଫୁଲର ରଙ୍ଗ ଓ ବାସ୍ନାରେ ସେମାନେ ଟାଣି ହୋଇ ଆସନ୍ତି । ଏ ଫୁଲରୁ ସେ ଫୁଲ, ସେଫୁଲରୁ ଏ ଫୁଲକୁ ଛୁଇଁ ଉଡ଼ିଲା ବେଳେ ସେମାନେ ମନଛୁଆଁ ଗୀତ ଗାଉଥାନ୍ତି । ଫୁଲଗୁଡ଼ିକ ବି ତାଙ୍କର ଏହି ଗାୟକ ବନ୍ଧୁଙ୍କୁ ଦେଖି ନିଜର ମହୁ ପେଟିକୁ ଦେଖାଇ ରଖନ୍ତି । ଗୀତ ଗାଇବା, ମହୁ ଖାଇବା, ଏଣେ ତେଣେ ଉଡ଼ି ବୁଲିବା ଭିତରେ ପତଙ୍ଗମାନେ ଏକ ଗୁରୁତ୍ୱପୂର୍ଣ୍ଣ କାମ କରିଯାନ୍ତି ।

ଅଣ୍ଡିରା ଗଛଗୁଡ଼ିକର ଫୁଲରୁ ପରାଗରେଣୁ ଯାଇ ମାଈ ଫୁଲରେ ମିଶେ । ଏହି ମିଳନ ପ୍ରକ୍ରିୟାରେ ମାଈ ଫୁଲ ଗର୍ଭବତୀ ହୁଏ । ଅଣ୍ଡାଗୁଡ଼ିକ ଆକାରରେ ବଡ଼ିଚାଲେ । ଗଛରେ ଫଳଧରେ । ଈଷତ୍ ଶାଗୁଆ ରଙ୍ଗର ଖୋଳପା ଭିତରେ ଶାଗୁଆ ବୁଟ ମଞ୍ଜିଟିଏ ବଢୁଥାଏ । ଗଛରେ କେତେ ଜାଗାରେ ଏପରି ଫଳ ଧରେ । ପ୍ରତି ଫଳ ଭିତରେ ମୁଁ (ଜୀବନ) ରହିଥାଏ । ମୋର ସଂଖ୍ୟା ଅନେକ ପରିମାଣରେ ବଢ଼ିଯାଇଥାଏ । ଏଥର ମୂଳ ଗଛଟିର ଆୟୁଷ ପୂରେ ।

## ଗୋଲାପ ଗଛରେ ମୁଁ

ଗୋଲାପ ନାଁ ଧରୁ ଧରୁ ମନରେ ସୁନ୍ଦର ଫୁଲଟିଏ ଝଲସି ଉଠେ । ପୃଥିବୀ ସାରା ଲୋକ ଗୋଲାପ ଫୁଲକୁ ଆଦର କରନ୍ତି । ଏହାର ନରମ, ସୁବାସିତ, ପାଖୁଡ଼ାଗୁଡ଼ିକ ସଜେଇ ହୋଇ ସୁନ୍ଦର ଦେଖାଯାଏ । ତେଣୁ ଫୁଲ ଭିତରେ ଗୋଲାପ ହିଁ ବେଶୀ ଗୁରୁତ୍ୱ ଓ ଆଦର ପାଏ । କିନ୍ତୁ ମୋ (ଜୀବନ) ପାଇଁ ଏହା କାଳ ହୋଇଥାଏ ।

କାରଣ ଫୁଲଗୁଡ଼ିକ ଏତେ ସୁନ୍ଦର ଦେଖାଯାଏ ଯେ, ଏହାକୁ ନ ଛିଣ୍ଡାଇ ଲୋକେ ରହି ପାରନ୍ତି ନାହିଁ । ସଭାସମିତି, ବାହାଘର, ଉପହାର, ସ୍ତ୍ରୀ ଲୋକଙ୍କ ଗଭା, ନେହେରୁଙ୍କ ଭଳି ଲୋକଙ୍କ କୋଟ - ଏ ସବୁ ପାଇଁ ଗୋଲାପ ଫୁଲ ଉପରେ ସମସ୍ତଙ୍କ ଆଖି ଥାଏ । ଗଛ ଦେହରେ ମୁନିଆଁ କଣ୍ଟା ଯୋଗୁଁ ଗାଈ, ଛେଳି ଆଦି ଜୀବ ଗଛଗୁଡ଼ିକୁ ଖାଇଯାଇ ପାରନ୍ତି ନାହିଁ । କିନ୍ତୁ ତୁମ ମଣିଷମାନେ ଆମକୁ ଅସ୍ତବ୍ୟସ୍ତ କରିପକାଅ ।



କିନ୍ତୁ ତଥାପି ମୁଁ ଖୁସି । ତୁମେ ସିନା ଫୁଲଗୁଡ଼ିକୁ ଛିଣ୍ଡାଇ ନିଅ, ଏଥିରେ ମୋର ବିଶେଷ ଅସୁବିଧା ହୁଏ ନାହିଁ । କାରଣ ଗଛଟି ସିନା ସୁନ୍ଦର ଦେଖାଯାଏ ନାହିଁ ; କିନ୍ତୁ ଫୁଲରେ ଯେଉଁ ମଞ୍ଜି ଥାଏ, ସେଥିରୁ ଗଛ ହୋଇପାରେ ନାହିଁ। ସେଥିରୁ ଗଛ ହେଉଥିଲେ, ତୁମମାନଙ୍କ ଆକ୍ରମଣରେ ଆମ ବଂଶ ଲୋପ ହୋଇ ଯାଆନ୍ତା । କିନ୍ତୁ ସେପରି ହୁଏ ନାହିଁ । ଆମର ବଂଶ ବଢାଇବାର କାଇଦା ପୂରାପୂରି ଅଲଗା ।

ତୁମେ ମଣିଷମାନେ ହିଁ ଏଥିରେ ସାହାଯ୍ୟ କର । ତୁମର ଅଧିକରୁ ଅଧିକ ଫୁଲ ଲୋଡ଼ା ହୁଏ । ତେଣୁ ତୁମେ ଅଧିକାରୁ ଅଧିକା ଚାରା ତିଆରି କର । ଏଥିରେ ମୁଁ ଯଥେଷ୍ଟ

ଖୁସି ହୁଏ । ନୂଆ ନୂଆ ଗଛ ଦେହରେ ରହି ମୋର ସଂଖ୍ୟା ବଢ଼ି ଚାଲେ । ତୁମକୁ ମଧ୍ୟ ଅଧିକା ଫୁଲ ମିଳେ । ତେଣୁ ତୁମେ ଖୁସି ମୁଁ ଓ ଗୋଲାପ ଗଛ ବି ଖୁସି ।

ନୂଆ ଚାରା ପାଇବା ପାଇଁ ତୁମେମାନେ ମୋ ଗଛର ପାକଳ ଡ଼ାଳଗୁଡ଼ିକ କାଟି ନିଅ । ଆମ୍ବ କି ପଣସ ଗଛରୁ ଏପରି ଡ଼ାଳଟିଏ କାଟିଦେଲେ ମୁଁ ମରିଯାଏ । କିନ୍ତୁ ଗୋଲାପ ଗଛରେ ମୋର ଭୂମିକା ଅଲଗା ଥାଏ । ମୁଁ ସେହି କଟା ଡାଳଟି ଭିତରେ ଜିଇଁ ରହିଥାଏ । ତୁମେ ମୋର ପତ୍ରଗୁଡ଼ିକୁ ଛିଡ଼ାଇଦିଅ । କାରଣ ସେମାନେ ଆଉ ଜିଇଁ ରହିବାର ସମ୍ଭାବନା ନ ଥାଏ ।

କାଠିଟିକୁ ନେଇ ତୁମେ ଏକ ନିରାପଦ ଜାଗାରେ ପାଣି ଦେଇ ପୋତିଦିଅ । ଉପରଭାଗଟି ଶୁଖି ନ ଯିବା ଓ ସାର ପାଇବା ପାଇଁ ତୁମେ ଟିପଗୁଡ଼ିକରେ ଗୋବର ଟେଳାଏ ଲେଖାଏଁ ମଡ଼େଇଦିଅ । ଏ ସମୟରେ ମତେ କେହି ବି ବାଧା ଦିଅନ୍ତି ନାହିଁ । ଡ଼ାଳଟି ଭିତରେ ବିଭିନ୍ନ କାମ ଚାଲେ ।

କିଛି ଦିନ ପରେ ଏହାର ମୂଳରେ କୁନି କୁନି ଚେର ଦେଖାଦିଏ ଓ ଚାରିଫଟକୁ ମାଡ଼ିଚାଲେ । ଡ଼ାଳର ଉପର ଭାଗରେ ଗଣ୍ଠି ଜାଗାରେ ଶାଗୁଆ କୁନି ପତର ସବୁ ଉଠି ଆସେ । ଏଥର ଗଛଟି ଚେରେଇ ଉଠେ । କିଛି ମାସ ଧରି ବଢ଼ିବା ପରେ ଗଛଟିରେ ଫୁଲ ଫୁଟେ । ତୁମେମାନେ ମୋ ପାଖକୁ ଧାଡ଼ି ଲଗାଅ । ବୁଟ ମଞ୍ଜିରୁ ଗଛ ହେବା ଓ ଗୋଲାପ ଡ଼ାଳରୁ ଗଛ ହେବା ଭିତରେ କେତେ ଫରକ । ଏହି କାମଟିକୁ 'କଲମୀ' କରିବା କୁହାଯାଏ ।

ଏହା ଦ୍ୱାରା ଗୋଟିଏ ମୂଳ ଗଛରୁ କେତେ ବର୍ଷ ଧରି ଅନେକ ନୂଆ ଚାରା ମିଳିପାରେ । ପ୍ରତିଥର ମୋର ସଂଖ୍ୟା ବଢ଼ିଚାଲେ । ଗୋଲାପ ପରି ଆମ୍ବ, ପିଜୁଳି, ଶାଗୁଆନ, ସଜନା, ସପେଟା, ଅନ୍ୟାନ୍ୟ ଫୁଲଗଛ ଆଦିରେ ଏହି ଉପାୟରେ ଭଲମାନର ନୂଆଁ ନୂଆଁ ଗଛ ତିଆରି କରାଯାଏ । ଆଜିକାଲି ଏହି ଉପାୟଟି ଯଥେଷ୍ଟ କାମିକା ବୋଲି ଜଣା ପଡ଼ିଲାଣି । ଆମ୍ବ, ସଜନା, ଆଦି ଗଛରେ ମଞ୍ଜି ଗଛ ଅପେକ୍ଷା କଲମୀ ଗଛଗୁଡ଼ିକରେ ଶୀଘ୍ର ଓ ଅଧିକ ପରିମାଣରେ ଫଳ ଫଳୁଛି । ମୁଁ ଏଥିଯୋଗୁଁ ଯଥେଷ୍ଟ ଖୁସି । ଖୁବ୍ ଶୀଘ୍ର ମୁଁ ମୋର ସଂଖ୍ୟା ବଢ଼ାଇଚାଲିଛି ।

# ପୋଦିନା ଗଛର ବଣ

ପୋଦିନା ଗଛ ନା ପଡ଼ି ତୁମେ ଏହାର ସୁଆଦିଆ ବାସନାକୁ ମନେ ପକାଇବଣି । ଖାଲି ଚଟଣି ନୁହେଁ , ଏହା ଏକ ଭଲ ଔଷଧ ଗଛ ମଧ୍ୟ । କେବେ ବଗିଚାରେ ପୋଦିନା ଗଛ ଲଗାଇଛ ? ତୁମ ଘରକୁ ମୁଁ ଯେତେବେଳେ ଆସିଥିଲି, ସେତେବେଳେ ଖଣ୍ଡେ ଛିଣ୍ଡା ଡ଼ାଳ ଦେହରେ ମୁଁ ଥିଲି । ଏଥିରେ ଅଳ୍ପ ଚେର ଓ ଦୁଇ ଚାରିଟା ପତ୍ର ଥିଲା । କିନ୍ତୁ ଏବେ ଦେଖିଲାବେଳକୁ ତୁମ ବାଡ଼ିରେ ମୁଁ ବେଶ୍ ଚକଡ଼ାଏ ଜାଗା ମାଡ଼ି ବସିଛି । ମୁଁ କେମିତି ଏତେ ଆଡ଼େ ମାଡ଼ିଗଲି ? ଜାବା ଲାଗୁଛି ନା ?

ସେଦିନ ତୁମେ ମୋ ଛିଣ୍ଡା ଡ଼ାଳଟିକୁ କୂଅ ମୂଳ ମାଟିରେ ପୋତି ଦେଇ ଆସିଥିଲ । ସେଠାରେ ମାଟିରେ ଯଥେଷ୍ଟ ପାଣି ଓ ସାର ଥିଲା । ଗଛଟି ଖୁସିରେ ବଢ଼ି ଚାଲିଲା । ଏଠାରେ ଜମିଗଲା ପରେ ଏହାର ଚେର ମାଟିରେ ଚାରିପଟକୁ ମାଡ଼ି ଚାଲିଲା । ଚେର ଯୁଆଡ଼େ ଗଲା, ଏଥିରୁ ଛୋଟିଆ ଶାଖାଟିଏମାନ ମାଟି ଉପରକୁ ଉଠିଲା ।



ସେଠାରେ ଏକ ନୂଆ ଗଛ ଉଠେଇଲା । ଏପରି ଭାବରେ ଗଛ ଚାରିଦିଗକୁ ମାଡ଼ି ଚାଲିଲା । ଘରେ ଚଟଣି କରିବା ପାଇଁ ତୁମେ ମଝିରେ ମଝିରେ ପତ୍ରଗୁଡ଼ିକ ତୋଳି ନେଲ ! ସେଥିରେ ଆମର କିଛି ଅସୁବିଧା ନ ଥିଲା । ନୂଆ ପତ୍ର କଅଁଳି ଦିନ କେତେଟାରେ ଆମେ ପୁଣି ଗଜୁରି ଉଠୁଥିଲୁ । ଅଳ୍ପ କେତେ ମାସରେ କେରାଏ ଡ଼ାଳ ବଦଳରେ ଆମେ ଏଠାରେ ଗୋଟିଏ ପୋଦିନା ବଣ ଗଢ଼ିଦେଲୁ ।

ଏହା ଖାଲି ପୋଦିନାର କଥା ନୁହେଁ ଅମରୀ, ଅମର ପୋଇ (ଗଢାପତ୍ର), ଦୁବଘାସ, ପୁରୁଣି ଶାଗ, ସୁନୁସୁନିଆ ଶାଗ, ଆଦି ଗଛ ଏପରି ମାଡ଼ିଯାଆନ୍ତି । ଗଛର ସଂଖ୍ୟା ସହିତ ମୋର ବି ସଂଖ୍ୟା ବଢ଼ି ଚାଲିଥାଏ ।

ଏପରି ହିସାବରେ ଦେଖିଲେ, ଗଛଲତାଙ୍କ ଭିତରେ ବିଭିନ୍ନ ଉପାୟରେ ମୋର ସଂଖ୍ୟା ବଦଳି, ବଢ଼ି ଚାଲିଥାଏ । ଆମ୍ବ ଗଛରୁ ଆମ୍ବ ଟାକୁଆ ମାଟିରେ ପଡ଼େ । ଏଥିରୁ ନୂଆ ଆମ୍ବ ଗଛ ଉଠେ । ପଣସ ଗଛର ଅନେକ ମଞ୍ଜି ହୁଏ । କଦଳୀ ଗଛ ମୂଳରୁ ନୂଆ ଗିଲ ଉଠେ । ଶିମୁଳି ଫଳ ଉଡ଼ିବୁଲି ଗଛ ସଂଖ୍ୟା ବଢ଼ାଏ । ବରଫଳ ଚଢ଼େଇ ପେଟରେ ପଶି ମଳ ଦ୍ୱାରା ଏଣେତେଣେ ବରଗଛ ସଂଖ୍ୟାକୁ ବଢ଼ାଏ । ଏପରି ବିଭିନ୍ନ କୌଶଳରେ ଗଛସଂଖ୍ୟା ଓ ମୋ ସଂଖ୍ୟା ବଢ଼ି ଚାଲିଥାଏ ।

### ଜୀବଜଗତରେ ମୋ ଦଉଡ଼

## କୁକୁଡ଼ା ଅଣ୍ଡାରୁ ଛୁଆ

ତୁମେମାନେ ତ କୁକୁଡ଼ା ସହ ଭଲ ଭାବେ ପରିଚିତ । ତେଣୁ କୁକୁଡ଼ାଙ୍କ ଜୀବନ ବିଷୟରେ ମୋଟାମୋଟି ଧାରଣା ପାଇଥିବ । କୁକୁଡ଼ା ଭିତରେ ମୋର ବଦଳଧାରା ବିଷୟରେ କିଛି କହୁଛି । ମୋର ଆରମ୍ଭ ମାଈ କୁକୁଡ଼ାର ଦେହ ଭିତରେ ହୁଏ । ଅଣ୍ଡିରା କୁକୁଡ଼ା ଓ ମାଈ କୁକୁଡ଼ାର ମିଳନ ହୁଏ । ସେତେବେଳେ ଅଣ୍ଡିରାଟିର ଶୁକ୍ରାଣୁ ଯାଇ ମାଈଟିର ଡ଼ିମ୍ବାଣୁ ପାଖରେ ପହଞ୍ଚନ୍ତି । କେବଳ ଗୋଟିଏ ଶୁକ୍ରାଣୁ ହିଁ ଡ଼ିମ୍ବାଣୁକୁ ଭେଦିପାରେ । ଡ଼ିମ୍ବାଣୁଟି ସେବେଠୁ ନିଷିକ୍ତ ବା ଫଳବତୀ ହୁଏ ।

ଏଥର କୁନି ଯୁଗ୍ମକଟି ଅଣ୍ଡାନଳୀରେ ପଶେ ଓ ମଳଦ୍ୱାର ଆଡ଼କୁ ଖସିଚାଲେ । ଏହା ଉପରେ ପରସ୍ତେ ପୁଷ୍ଟିସାର ରହେ । ଏହି ଲାଲୁଆ ଯୁଗ୍ମକଟିକୁ ସୁରକ୍ଷିତ ରଖିବାପାଇଁ ଗୋଟିଏ ପତଳା ଝିଲ୍ଲୀ ରହେ । ଏହା ଭିତରେ କିଛି ପବନ ବି ରହିଥାଏ । ଅଣ୍ଡାଟିଏ ଭାଙ୍ଗିଲେ ତୁମେ ଏହା ଦେଖିପାରିବ । ଏହି ପତଳା ଝିଲ୍ଲୀ ଉପରେ ଚୂନର ଖୋଳପାଟିଏ ଥାଏ । ଏହା ମାଇ କୁକୁଡ଼ାର ପେଟ ଭିତରେ ଥିବା ଯାଏଁ ନରମ ଥାଏ । କିନ୍ତୁ ବାହାରକୁ ବାହାରି ଆସିବା ପରେ ଏଥିରେ ଅଙ୍ଗାରକାମ୍ଳ ବାଷ୍ପ ବାଜେ । ଏହା କ୍ରମଶଃ ଟାଣ ହୋଇଯାଏ ।

ଅଣ୍ଡାଟି କୁକୁଡ଼ା ପାଇଁ ଏକ ମଞ୍ଜିର କାମ ଦିଏ । ଗଛର ମଞ୍ଜି ଉଧେଇବା ପାଇଁ ଉପଯୁକ୍ତ ପରିବେଶ ଲୋଡ଼ିଥାଏ । ସେପରି ଅଣ୍ଡାଟିଏ ମଧ୍ୟ । କିନ୍ତୁ ଦୁଃଖର କଥା ଏହା ଯେ, ମଣିଷ ହିଁ ଯଥେଷ୍ଟ ଅଣ୍ଡା ଖାଇଯାଏ । କେତେକ ଅଣ୍ଡାରୁ ଛୁଆ ଫୁଟିବାର ସୁବିଧା ମିଳେ । ମା' କୁକୁଡ଼ା ପେଟ ତଳେ ୨୧ ଦିନ ଯାଏଁ ଅଣ୍ଡା ଉଷୁମାଏ । ଆଜିକାଲି ତ ତୁମେ ଅଣ୍ଡା ଫୁଟା ଯନ୍ତ୍ରଦ୍ୱାରା ଅଧିକ ସଂଖ୍ୟାରେ ଓ ସୁବିଧାରେ ଅଣ୍ଡା ଫୁଟାଇପାରୁଛ । ଏହି ଅଣ୍ଡାକୁ କେବେ ଭାଙ୍ଗି ଦେଖିଛ ?



ସଜ ଅଣ୍ଡାକୁ ଭାଙ୍ଗିଲେ ତୁମେ ଏହାର ହଳଦିଆ କେଶର ଦେହରେ ଛୋଟିଆ ଧଳା ଦାଗଟିଏ ଦେଖିପାରିବ । ଏହା ମୋର ଆରମ୍ଭ ରୂପ । ସେତେବେଳେ ମୁଁ ଭ୍ରୂଣ ଅବସ୍ଥାରେ ଥାଏ । ଅଣ୍ଡାଟି ଏବେ ମାଆ ପେଟ ତଳେ ଉଷୁମ ହେଉଥାଏ । ମୁଁ ଆକାରରେ ବଢ଼ିବା ସହିତ ବଦଳି ଚାଲିଥାଏ ।

ତିନି ଦିନ ବେଳକୁ ମୁଁ ଛୋଟ ପୋକଟିଏ ପରି ଦେଖାଯାଏ । ହଳଦିଆ ରଙ୍ଗର କେଶରଟି ଉପରେ ସରୁ ସରୁ ରକ୍ତନଳୀ ବଢ଼ିବାକୁ ଆରମ୍ଭ କରିଥାଏ । ଭ୍ରୂଣଟି ବଢ଼ିବା ପାଇଁ ଖାଦ୍ୟ ଲୋଡୁଥାଏ । ଏହା ସେ ରକ୍ତନଳୀ ଦେଇ କେଶରରୁ ନେଇଥାଏ । ଏହି ଅବସ୍ଥାରେ ମୋ ରୂପ ବିଚିତ୍ର ପ୍ରକାରର ହୋଇଥାଏ । ଏହି ବୟସରେ ଅଧିକାଂଶ ପ୍ରାଣୀଙ୍କର ରୂପ ଏକା ପ୍ରକାରର ହୋଇଥାଏ । ମଣିଷ, କୁକୁଡ଼ା, କଇଁଚ, ମାଛ ଆଦି ସମସ୍ତଙ୍କୁ ଏ ସମୟରେ ବାରି ହୁଏ ନାହିଁ । ଏବେଠୁ ସେମାନଙ୍କ ରୂପ ବିଶେଷ ଆକାର ପାଇଥାଏ ।

ପାଞ୍ଚ ଦିନ ବେଳକୁ କେଶରଟି ଶିରାମୟ ଦେଖାଯାଏ । ଭ୍ରୂଣଟି ଆହୁରି ଟିକେ ବଢ଼ିଯାଇଥାଏ । ଚଢ଼େଇ ଆକାରଟିର ଆଭାସ ଦେଖିବାକୁ ମିଳେ । ଗୋଡ଼, ଥଣ୍ଟ ଆଦି ଜାଗାରେ ଗୋବ ବାହାରିଲା ପରି ଲାଗେ । ଆଖିଟି ପରିଷ୍କାର ଦେଖାଯାଏ । ଛୁଆଟିର ଆକାର ବଢ଼ିଚାଲେ ।

ଏହି ଅବସ୍ଥାରେ ସେ ଜୀବନ୍ତ ଥାଏ । ତା' ଦେହ ଭିତରେ ବିଭିନ୍ନ ଗତିବିଧି ଚାଲିଥାଏ । ପ୍ରାୟ ପନ୍ଦର ଦିନ ବେଳକୁ ଛୁଆଟି କୁକୁଡ଼ା ଚିଆଁ ପରି ଦେଖାଯାଏ । କେଶରଟି ଖାଦ୍ୟ ରୂପେ ବ୍ୟବହାର ହୋଇ ଯଥେଷ୍ଟ ସରିଯାଏ । ଛୁଆଟିର ମୁଣ୍ଡ, ଥଣ୍ଟ, ଡ଼େଣା, ଗୋଡ଼, ପର ଆଦି ବାରି ହୁଏ । ଛୁଆଟି ଅଣ୍ଡାଟିର ବାୟୁଥଳୀ ଛଡ଼ା, ବଳକା ଜାଗାକୁ ଭରି ଚାଲିଥାଏ । ୧୯ ଦିନ ବେଳକୁ ଛୁଆଟି ପୂରା ଗଢ଼ି ହୋଇଯାଇଥାଏ । ଅଣ୍ଡା ଭିତରେ ତା' ପାଇଁ ଆଉ ଖାଦ୍ୟ କିମ୍ବା ଜାଗା ନ ଥାଏ । ଭୋକ ବଢ଼େ । ରୁନ୍ଧିରୁନ୍ଧି ଲାଗେ ।

ସେ ବାହାରକୁ ଚାଲି ଆସିବା ପାଇଁ ବାଟ ଖୋଜେ । କଡ଼ ଲେଉଟାଇବା ପାଇଁ ବି ଜାଗା ନ ଥାଏ । ତା'ର ଏକ ମାତ୍ର ଅସ୍ତ୍ର ଥାଏ ଟାଣୁଆ ଥଣ୍ଟଟି । ସେ ଭିତରୁ ଚିତ୍କାର କରି ଭିଡ଼ିମୋଡ଼ି ହୁଏ । ମା' ପେଟ ତଳେ ଥିଲେ ମା' ଅଣ୍ଡାଟିକୁ ଏପଟ ସେପଟ କରି ଜାନାଏ ।

ଶବ୍ଦ ଆସୁଥିବା ଜାଗାଟିକୁ ଲକ୍ଷ୍ୟ କରି ସେ ଅଣ୍ଡାଟିକୁ ଖୁମ୍ପି ଫୁଟାଇଦିଏ । ଛୁଆଟି ଠେଲିପେଲି ବାହାରକୁ ଚାଲିଆସେ । ଏକ ନୂଆ ଦୁନିଆରେ ସେ ପହଞ୍ଚିଯାଏ । ତୁମେମାନେ କୁହାକୁହି ହୁଅ, ଛୁଆଟିଏ ଜନ୍ମ ନେଲା । କିନ୍ତୁ ସେତେବେଳକୁ ମୋ (ଜୀବନ) ବୟସ ମାସେ ପାଖାପାଖି ହୋଇସାରିଥାଏ । ମା' ପେଟରେ ଡ଼ିମ୍ବାଣୁଟି ଫଳବତୀ ହେବା ବେଳଠୁଁ ହିଁ ମୁଁ ତିଆରି ହୋଇ ସାରିଥାଏ ।

ଅଣ୍ଡା ଖୋଳରୁ ବାହାରିଲା ବେଳକୁ ମୁଁ ଯଥେଷ୍ଟ ଥକି ଯାଇଥାଏ । ମା' ପେଟତଳେ ବା ଅଣ୍ଡା ଫୁଟା ଉଷୁମ ଡ଼ବାଟି ଭିତରେ ମୁଁ କିଛି ସମୟ ଚୁପ୍‌ଚାପ ପଡ଼ିରହେ । କ୍ରମେ ମୋ ଲାଳୁଆ ଦେହଟି ଶୁଖି ସଫା ଦେଖାଯାଏ । ମୁଁ ଠିଆ ହେବାକୁ ବଳ ପାଏ । ଭୋକରେ ପେଟ ଜଳୁଥାଏ ।

ପାଖରେ ଯାହା ପାଏ, ଖାଇବା ଆଶାରେ ଖୁମ୍ପି ପକାଏ । ଅଣ୍ଡାଖୋଳ, କୁଟା, କାଠି, ପୋକ ଆଦି ସବୁ । ମା' ପାଖରେ ଥିଲେ ମା' ବା ମାଲିକାଣୀ ମୋ ପାଇଁ କିଛି ସରୁ ଖୁଦ ଯୋଗାଇଦିଅନ୍ତି । ଯନ୍ତ୍ରରେ ଥିଲେ ବି ମୋତେ ଖାଇବାକୁ ମିଳିଯାଏ । ସେତେବେଳେ ମୁଁ କି ଗୁଲୁଗୁଲିଆ ଦେଖାଯାଉଥାଏ

ମୁଁ ଦ୍ରୁତ ବେଗରେ ବଢ଼ିଚାଲେ । ଲୁମୁଲୁମିଆ ଦେହଟାରେ ଡେ଼ଣା ବଢ଼େ, ପର ଉଠେ, ମୁଁ ସୁନ୍ଦର ଦେଖାଯାଏ । ବୟସ ବଢ଼ିଲେ ମୁଁ ପୁଣି ଛୁଆ ସୃଷ୍ଟି କରିବାକୁ ତିଆର ହୋଇଯାଏ ।

## ତୁମ (ମଣିଷ)ର ଆରମ୍ଭ

ଆଚ୍ଛା ! ତୁମେ ତୁମ ନିଜ ବିଷୟରେ କେବେ ଭାବିଛ ? କୁକୁଡ଼ା ଭ୍ରୂଣ ସିନା ଅଣ୍ଡା ଭିତରେ ବଢ଼େ ଓ ଶେଷରେ ଛୁଆ ରୂପରେ ଦେଖାଯାଏ, ତୁମର ଆରମ୍ଭଟି କେଉଁଠାରୁ ? ତୁମର ତ ପିଲାଦିନ କଥା ବି ମନେ ନ ଥିବ । କିନ୍ତୁ ତୁମେ ଜାଣିଥିବ ଯେ, ଦିନେ ମା' ତୁମକୁ ଜନ୍ମ ଦେଇଥିଲେ । ତୁମେ ତାଙ୍କ ଦୁଧ ଖାଇ କେତେ ଗେଲରେ ବଢ଼ିଥିଲ ।

କିନ୍ତୁ ମୁଁ ତା'ର ପ୍ରାୟ ବର୍ଷକ ଆଗରୁ ଆରମ୍ଭ ହୋଇଥିଲି । ମା' ପେଟ ଭିତରେ

ମୋ ପାଇଁ ଏକ ସୁରକ୍ଷିତ ଜାଗା ଥିଲା । ସେଠାରେ ଖାଇପିଇ ମୁଁ ଆରାମରେ ଶୋଇଥିଲି । ପ୍ରାୟ ନ ମାସ କାଳ ଶୋଇ ଶୋଇ ମୁଁ କେତେ ସପନ ଦେଖୁଥିଲି । ତା'ପରେ ତୁମେମାନେ ମତେ ଦେଖିପାରିଲ । ଏଥର କହୁଛି ମୋର ବିଚିତ୍ର କାହାଣୀ ।

ତୁମ ମା' ବାପାଙ୍କର ମିଳନରୁ ହିଁ ମୋର ସୃଷ୍ଟି । ମା'ଙ୍କ ଦେହରେ ପ୍ରତି ମାସରେ ଗୋଟିଏ ଅଣ୍ଡା (ଡ଼ିମ୍ବକ) ତିଆରି ଚାଲିଥାଏ । ଥରେ ବାପାଙ୍କର ଅନେକଗୁଡ଼ିଏ ଶୁକ୍ରାଣୁ ମଧ୍ୟରୁ ଗୋଟିଏ ଏହାକୁ ଫଳବତୀ କଲା । ସେହି ଠାରୁ ମୋର ଆରମ୍ଭ । ସେତେବେଳେ ମୋର ଆକାର ଅତି ଛୋଟ ଥିଲା । ଗୋଟିଏ ସୋରିଷ ଦାନା ଠାରୁ ବି ଯଥେଷ୍ଟ ଛୋଟ । ଏଥିରେ ହାତ, ଗୋଡ଼, ମୁଣ୍ଡ , ପେଟ ବୋଲି କିଛି ନ ଥିଲା ।

ନରମ ପିଣ୍ଡୁଳାଟିଏ ଥିଲି ମୁଁ । ମା'ପୁଣିର ଲାଲୁଆ ପାଣିରେ ମୁଁ ଭାସି ବୁଲୁଥିଲି । ଏକକୋଷୀ ଜୀବଟିଏ ପରି । ମୋ ଭିତରେ କେତେ ରକମର କାମ ଚାଲିଥିଲା । ମୁଁ ସେହି ଲାଲୁଆ ରସ ଭିତରୁ ବଞ୍ଚିବା ପାଇଁ ଖାଦ୍ୟ, ପବନ, ପାଣି, ବାସ ଆଦି ସବୁ ପାଉଥିଲି । କ୍ରମେ ମୋ ଭିତରେ ନୂଆ ନୂଆ କୋଷ ତିଆରି ହେଲା । ଏକରୁ ଦୁଇ, ଦୁଇରୁ ଚାରି, ଆଠ, ଷୋହଳ, ବତିଶି, ଚଉଷଠି .... ।

କିନ୍ତୁ ମୋର ବାହ୍ୟ ଆକୃତି ଅତି ବେଶୀ ବଡ଼ି ଯାଇ ନ ଥିଲା । ସପ୍ତାହକ ବେଳକୁ କୋଷଗୁଡ଼ିକ ସଜାଇ ହେବାକୁ ଆରମ୍ଭ କଲେ । ମୋ ଆକାର ଆଉ ଗୋଲ ହୋଇ ରହିଲା ନାହିଁ । ଲମ୍ୱାଳିଆ ହେବାରେ ଲାଗିଲା । କୋଷମାନଙ୍କର କାମ ବି ଅଲଗା ହେବାରେ ଲାଗିଲା । କିଏ ବଢ଼ିବା କାମ, କିଏ ଗଢ଼ିବା କାମ, କିଏ ଖାଦ୍ୟ ହଜମ, କିଏ ଶ୍ୱାସକ୍ରିୟା, ଇତ୍ୟାଦି । ଏବେ ଏହା ଏକ ବହୁକୋଷୀ ଜୀବ ବନି ଯାଇଥାଏ । ଏହି ସମୟରେ ଏହାର ଛୋଟିଆ ଲାଞ୍ଜଟିଏ ଥାଏ । ଏହା ସହ ଅନ୍ୟ ଜୀବଜନ୍ତୁଙ୍କର ଭୃଣର ବି ଅନେକ ମେଳ ରହିଥାଏ । କୁକୁଡ଼ା, କଇଁଚି, ମାଛ ଆଦିଙ୍କ ଭୃଣ ବି ଏକା ପରି ଦେଖାଯାଏ ।

ପ୍ରାୟ ଏକ ମାସ ବେଳକୁ ଅମେରୁଦଣ୍ଡୀ ଦେହଟି ମେରୁଦଣ୍ଡୀ ହୁଏ । ସେତେବେଳେ ଦେହରେ ହୃତପିଣ୍ଡଟି ତିଆରି ସରିଥାଏ । ଏହା ଦୁଇଟି ଛୋଟ ନଳୀ ପରି ଦେଖାଯାଉଥାଏ । ତମ ଆକାର ଲମ୍ୱାଳିଆ ହୋଇ ପ୍ରାୟ ୫ ମି.ମି.ର ହୋଇଥାଏ । ଏହି ଅବସ୍ଥାରୁ ମୋ ଦେହରେ ସ୍ନାୟୁ, ଶିରା, ମସ୍ତିଷ୍କ ଆଦି ତିଆରି ହେବାକୁ ଆରମ୍ଭ ହେଲା ଏ ଯାଏଁ ମୁଁ ଲାଲୁଆ

ପାଣି ଭିତରେ ଭାସି ବୁଲୁଥିଲି । ମେରୁଦଣ୍ଡ ବଢ଼ିବା ପରଠାରୁ ମୋ ଉପରେ ମୋର କିଛିଟା ନିୟନ୍ତ୍ରଣ ରହିଲା ।



ପାଞ୍ଚ ସପ୍ତାହ ବେଳକୁ ମୋର ତିଆରି ହେଲା, ହାତ, ଗୋଡ଼ ଜାଗାରେ ଗୋବ ପରି ଫୁଲା ଦେଖାଦେଲା । ନାକ, କାନ, ଆଦି ଇନ୍ଦ୍ରିୟ ବି ତିଆରି ହେଲା । ରକ୍ତ ସଞ୍ଚାଳନ ବି ଆରମ୍ଭ ହେଲା । ଛଅ ସପ୍ତାହ ବେଳକୁ ମୋ ଆକାର ଏକ ବିନ୍ ମଞ୍ଜି ଆକାରର ହୋଇଥାଏ । ହାତ, ଗୋଡ଼ ଓ ଦେହ ଆହୁରି ବଢ଼ିଥାଏ । ମୁଁ ଏବେ ହାତକୁ ଅଳ୍ପ ହଲାଇ ପାରୁଥାଏ । ଏଥିରେ ଆଙ୍ଗୁଠିଗୁଡ଼ିକ ତିଆରି ହେବାକୁ ଆରମ୍ଭ କଲା । ଦେହ ଭିତରେ ହାଡ଼ ତିଆରି ବି ଆରମ୍ଭ ହେଲା ।

ଆଠ ସପ୍ତାହ ବେଳକୁ ମୁଁ ଛୋଟ କମଳା ଆକାରର ହୋଇଥାଏ । କେବଳ ମଣିଷ, ମାଙ୍କଡ଼ ଆଦି ଶ୍ରେଣୀର ଜୀବ ଏହି ଆକାରର ହୋଇଥାନ୍ତି । ମୁଣ୍ଡଟି ବେଶ୍ ବଡ଼ ଜଣାପଡୁଥାଏ । ନାହି ଦେଇ ମୁଁ ମା'ଠାରୁ ଆବଶ୍ୟକୀୟ ଖାଦ୍ୟ ସଂଗ୍ରହ କରୁଥାଏ । ଏହି ତରଳ ଖାଦ୍ୟକୁ ହଜମ କରିବା ପାଇଁ ପାକସ୍ଥଳୀଟି ଗଢ଼ା ସାରିଥାଏ । ମସ୍ତିଷ୍କ ଚଢ଼

ସ୍ନାୟୁମଣ୍ଡଳୀ ପୂରା ଦମ୍‌ରେ କାମ କରିଚାଲିଥାନ୍ତି ।

ଆଉ ମାସକ ମଧ୍ୟରେ ମୋର ସବୁ ଦରକାରୀ ଅଙ୍ଗ ଗଢ଼ା ସରିଥାଏ । ମୋର ମଣିଷ ଆକାରଟିକୁ ସ୍ପଷ୍ଟ ବାରି ହେଉଥାଏ । ଲାଞ୍ଜଟି ବି ଉଭେଇ ଯାଇଥାଏ । ଦେହ ଭିତରେ ଏହା ଲୁଚିଯାଇଥାଏ । ହାତ, ଗୋଡ଼, ଆଙ୍ଗୁଠି, ମୁଣ୍ଡ, ମସ୍ତିଷ୍କ ଓ ଦେହର ବିଭିନ୍ନ ବିଭାଗ ପୂରା ଦମ୍‌ରେ କାମ କରୁଥାନ୍ତି ।

ପ୍ରଥମ ୩-୪ ମାସ ଯାଏଁ ମା'ଙ୍କୁ ଯଥେଷ୍ଟ ସତର୍କ ହୋଇ ଚଳିବାକୁ ପଡୁଥିଲା । ତା ନ କରିଥିଲେ ଏ ସମୟରେ ମୋର ତିଆରିରେ ବାଧା ଆସିଥାନ୍ତା । କିନ୍ତୁ ମା' ଏ ଦିଗରେ ସତର୍କ ଥିଲେ ।

ଏହା ପରଠୁ ମା' ଅଧିକା ଅଧିକା ଖାଉଥାନ୍ତି । ମୁଁ ବି ଅଧିକ ଖାଦ୍ୟ ପାଉଥାଏ । ଫଳରେ ମୋର ଆକାର ଦୃତ ବେଗରେ ବଢ଼ି ଚାଲିଲା । ମା' ପେଟକୁ ଫୁଲାଇ ମୁଁ କେତେ ବଢ଼ିଗଲି । ୪ ମାସରୁ ୯ ମାସ ଯାଏଁ ଖାଇପିଇ ମୁଁ ସୁବିଧାରେ ବଢ଼ି ଚାଲିଲି ।

୯ ମାସ ବେଳକୁ ମା' ପେଟରେ ଆଉ ଜାଗା ନ ଥିଲା । ଗର୍ଭଥଳୀଟି ମତେ ଠେଲିବାକୁ ଆରମ୍ଭ କଲା । ମୁଁ ବାହାରକୁ ଚାଲି ଆସିଲି । ଏଥରଠୁ ମା' ଦେହରୁ ମୁଁ ଅଲଗା ହୋଇଗଲି । ମା' ଠାରୁ ମୋ ନାହିଟିକୁ କାଟି ଦିଆଗଲା । ମୁଁ ମା'ଠାରୁ ଦୁଧ ଖାଇ ବଢ଼ିବାରେ ଲାଗିଲି ଓ ଆଜିର ରୂପରେ ପହଞ୍ଚିଲି । କାଲିକୁ ମୁଁ ମଧ୍ୟ ଛୁଆ ତିଆରି କରିପାରିବି ।

## ମୁଁ ପ୍ରଜାପତି ଭିତରୁ କହୁଛି

ପ୍ରଜାପତି ନାଁ ଶୁଣି ତୁମେ ଉଲ୍ଲସି ଉଠୁଥିବ । ରଙ୍ଗବେରଙ୍ଗ ପ୍ରଜାପତି ବିନା ଶବ୍ଦରେ ଡ଼େଣାକୁ ଡ଼େଣା ବାଡ଼ାଉଥାଏ । ଏ ଫୁଲରୁ ସେ ଫୁଲ ଉଡ଼ି ଫୁଲରୁ ମହୁ ପିଉଥାଏ । ବଗିଚାର ସୌନ୍ଦର୍ଯ୍ୟ ବଢ଼ାଉଥାଏ । ଏହାର ପଛରେ ଗୋଡ଼ାଇ ଗୋଡ଼ାଇ ଧରିବାକୁ ମନ ହୁଏ । ଧରିନେଲେ ହାତରେ ରେଣୁ ପରି ତା'ଦେହର କିଛି ରଙ୍ଗୀନ ରେଣୁ ଲାଗି ରହିଯାଏ । ମୁଁ ସେହି ପ୍ରଜାପତି ଭିତରୁ କହୁଛି । ମୋର ଆରମ୍ଭ କେଉଁ ଠାରୁ କହିଲ ?

ଗଛର ପତ୍ର ତଳ ପାଖରେ କେବେ ଗୋରିଷ ଆକାରର ଧଳା ବା ରଙ୍ଗୀନ ଅଣ୍ଡା ଲାଗିଥିବାର ଦେଖିଛ ? ମା' ପ୍ରଜାପତି ଏପରି ଅନେକ ଅଣ୍ଡା ଦେଇ କମ୍ ଦିନରେ ମରିଯାଏ । କିଛି ଦିନ ଭିତରେ ଅଣ୍ଡାଗୁଡ଼ିକ ଫୁଟି ଛୁଆ ବାହାରନ୍ତି । କିନ୍ତୁ ଛୁଆଗୁଡ଼ିକ ପ୍ରଜାପତି ହୋଇ ନ ଥାନ୍ତି । ଏମାନେ ସବୁ ସଁବାଳୁଆ ରୂପରେ ଗଛର ପତ୍ର ଖାଇ ଚାଲନ୍ତି ।



କୁକୁଡ଼ା ଅଣ୍ଡା ଭିତରେ ବା ମଣିଷ ମା'ର ପେଟରେ ଯେପରି ଛୁଆଟି ଅନେକ ଆକାର ଦେଇ ବଦଳି ଚାଲେ, ପ୍ରଜାପତିର ଅଣ୍ଡା ବାହାରେ ମଧ୍ୟ ସେପରିକେତୋଟି ରୂପାନ୍ତର ଦେଖିବାକୁ ମିଳେ । ତେଣୁ ପ୍ରଜାପତିଟି ଏକ ପୂର୍ଣ୍ଣ ରୂପାନ୍ତରୀ ଶ୍ରେଣୀ ବୋଲି କୁହାଯାଏ ।

ସଁବାଳୁଆଗୁଡ଼ିକ ପ୍ରଜାପତିର ଲାର୍ଭା ଅବସ୍ଥା । ଏହି ରୂପରେ ଥିଲାବେଳେ ମତେ ପ୍ରବଳ ଭୋକ ଲାଗେ । ମୁଁ ଲଗାତାର ଖାଇ ଚାଲେ । ଖାଇ ଖାଇ ମୋ ରଙ୍ଗ ପତ୍ର ରଙ୍ଗ ପରି ଶାଗୁଆ, ନାଲି ବା ହଳଦିଆ ହୋଇଯାଏ । ମୁଁ ଯଥେଷ୍ଟ ହୃଷ୍ଟପୁଷ୍ଟ ହୋଇଯାଏ । ମୁଁ ଏକ ବଡ଼ ସଁବାଳୁଆ ବନିଯାଏ । ଏଥର ବିଶ୍ରାମର ସମୟ ଆସେ । ମୁଁ ଗୋଟିଏ ଅନ୍ଧାରୁଆ ଜାଗା ଖୋଜି ବୁଲେ ।

ଶୃଙ୍ଖଳା, ଅନ୍ଧାରୁଆ ଓ ନିରାପଦ ଜାଗାଟିଏ ବାଛିନିଏ । ଶୋଇବା ପାଇଁ ପ୍ରସ୍ତୁତ ହୁଏ, ପେଟ ତଳୁ ଲାଳୁଆ ସୂତା ବାହାର କରେ । ଏହାକୁ ଦେହ ଚାରି ପାଖରେ ବିଛାଇଦିଏ । ଘରଟି ସବୁଆଡୁ ବନ୍ଦ ହୋଇଯାଏ । ଏଇଟି ମୋର ପ୍ୟୁପା ଅବସ୍ଥା । କୋଷଟି ଭିତରେ ମୁଁ ନିଘୋଡ଼ ନିଦରେ ଶୋଇଯାଏ । କୋଷଟି କାଛ, ଡ଼ାଳ ବା ଘରକୋଣରେ ଝୁଲୁଥାଏ ।

କୋଷା ଭିତରେ ମୁଁ କେତେ ସ୍ୱପ୍ନ ଦେଖୁଥାଏ । ଏଣେ ମୋ ଦେହର ଆକାର ମଧ୍ୟ ଲଗାତାର ବଦଳି ଚାଲିଥାଏ । ମୋର ରୁମ ସବୁ ଝଡ଼ିଯାଏ । ଡ଼େଣା, ଗୋଡ଼ ଆଦି ଉଠେ । ମୁଁ ଏକ ସୁନ୍ଦର ପ୍ରଜାପତି ବନିଯାଏ । କିନ୍ତୁ କୋଷାଟି ମୋ ବାଟକୁ ବନ୍ଦ କରି ରଖିଥାଏ । ମୁଁ କୋଷାଟିକୁ କାଟି ବାଟ ବନାଇବାରେ କିଛି ସମୟ ଲାଗିଯାଏ । ବାଟ ଖୋଲିବା ପରେ ମୁଁ ଗୁରୁଣ୍ଡି ଗୁରୁଣ୍ଡି ବାହାରକୁ ଚାଲିଆସେ ।

କିନ୍ତୁ ଏବେ ଉଡ଼ିଯିବାକୁ ମୋ ଡ଼େଣାରେ ଯଥେଷ୍ଟ ବଳ ନ ଥାଏ । ଗୋଡ଼, ଡ଼େଣା, ଦେହ ଆଦି ଲାଳୁଆ, ଅଠାଳିଆ ହୋଇ ରହିଥାଏ । ଏହାକୁ ଶୁଖାଇବା ପାଇଁ ମୁଁ ଗୋଡ଼ ଓ ଡ଼େଣାକୁ ହଲାଏ । ଏଥର ମୁଁ ତିଆର ହୋଇଯାଏ । ମୋର ପ୍ରଜାପତିର ଜୀବନଧାରା ଆରମ୍ଭ ହୋଇଯାଏ । ଫୁଲର ଦୁନିଆଁକୁ ମୁଁ ଉଡ଼ିଯାଏ । ମହୁ ଖାଇ ବୁଲୁବୁଲୁ ଆମର ମିଳନ ହୁଏ । ପୁଣି କେତୋଟି ନୂଆ ଜୀବନ ପାଇଁ ବାଟ ଖୋଲେ । ଅଣ୍ଡା ଦେବାର କିଛି ଦିନ ଭିତରେ ମୋର ଆୟୁଷ ପୂରେ ।

## ମୁଁ ମହୁମାଛି ଭିତରୁ କହୁଛି

ତୁମ ପରି ମୋର ବି ସମାଜ ରହିଛି । ଆମେ ସମସ୍ତେ ମିଳିମିଶି କାମ କରୁ, ପରସ୍ପରକୁ ସାହାଯ୍ୟ କରୁ ଓ ଖୁସିରେ ଚଳୁ । ତେଣୁ ଆମକୁ ତୁମେମାନେ 'ସାମାଜିକ କୀଟ' ବୋଲି କହୁଛ । କିନ୍ତୁ ଆମର ଜୀବନଧାରା ତୁମ ଠାରୁ ଯଥେଷ୍ଟ ଅଲଗା । ଆମେମାନେ ତୁମମାନଙ୍କ ପରି ସମସ୍ତେ ଛୁଆ ଜନ୍ମ କରିବା ଦରକାର ନ ଥାଏ । ଛୁଆ ଜନ୍ମ କରିବା କାମ ଆମ ରାଣୀ ମହୁମାଛିକୁ ନିଅନ୍ତି ।

ଆମର ପ୍ରତ୍ୟେକ ଦଳରେ ଗୋଟିଏ ମୁଖ୍ୟ ରାଣୀ ଥାଏ । ସେ କେବଳ ଗୋଟିଏ ବା ଅଳ୍ପ କିଛି ରାଜା ମହୁମାଛିଙ୍କ ସହ ଶାରୀରିକ ସମ୍ପର୍କ ରଖେ । ଏହା ପରଠୁଁ ସେ ଦିନକୁ ହଜାରରୁ ତିନି ହଜାର ଯାଏଁ ଅଣ୍ଡା ଦେବାରେ ଲାଗେ । ରାଣୀର ଏକ ବିଶେଷତ୍ୱ ହେଉଛି - ସେ ଅଣ୍ଡିରା ମାଛିର ଶୁକ୍ରକୁ ନିଜ ଦେହ ଭିତରେ ସାଇତି ରଖିପାରେ । ଦରକାର ବେଳେ ସେ ଏହାକୁ ବ୍ୟବହାର କରି ନିଜ ଡ଼ିମ୍ବାଣୁଗୁଡ଼ିକ ନିଷେକ କରାଏ । ନିଷିକ୍ତ ଡ଼ିମ୍ବାଣୁରୁ ଶ୍ରମିକ ଓ ରାଣୀ ମହୁମାଛି ଜନ୍ମ ନିଅନ୍ତି । କିନ୍ତୁ ଅଣନିଷିକ୍ତ ଅଣ୍ଡାରୁ କେବଳ ପୁରୁଷ ମାଛି ଜନ୍ମ ନିଅନ୍ତି ।



ରାଣୀ ଅଣ୍ଡା ଦେବାର ସପ୍ତାହକ ମଧ୍ୟରେ ଏଥିରୁ ଛୁଆ ବାହାରି ଆସନ୍ତି । ଏହି ଲାର୍ଭଗୁଡ଼ିକୁ ଭୀଷଣ ଭୋକ । ସଁବାଳୁଆ ପରି ସେମାନେ ଯଥେଷ୍ଟ ଖାଦ୍ୟ ଲୋଡ଼ନ୍ତି । ଶ୍ରମିକ ମହୁମାଛିମାନେ ଏମାନଙ୍କୁ ଖୁଆନ୍ତି । ପାଞ୍ଚ ଛଅ ଦିନ ପରେ ଶ୍ରମିକମାନେ ଘରଗୁଡ଼ିକର ମୁହଁକୁ ମହମ ଦେଇ ବୁଜି ଦିଅନ୍ତି । ଲାର୍ଭାଗୁଡ଼ିକ ଶୋଇ ଶୋଇ ପ୍ୟୁପା ଅବସ୍ଥାରେ ପହଞ୍ଚନ୍ତି ।

ଶ୍ରମିକ ଓ ପୁରୁଷମାନେ ନିଜ ଚାରିପଟେ କୋଷା ବୁଣିଦିଅନ୍ତି । ପ୍ରାୟ ବାର ଦିନ ପରେ ପୂର୍ଣ୍ଣାଙ୍ଗ ଶମିକ ମହୁମାଛିଗୁଡ଼ିକ ଘରର ମୁହଁ ଖୋଲି ବାହାରକୁ ଚାଲିଆସନ୍ତି । ପୁରୁଷ ମହୁମାଛିମାନେ ଦୁଇ, ଚାରି ଦିନ ଡେ଼ରିରେ ବାହାରନ୍ତି । କିନ୍ତୁ ରାଣୀ ଛୁଆମାନେ

ବସା ଭିତରେ ହିଁ ରହିଥାନ୍ତି । ଶ୍ରମିକମାନେ ବସା ମୁହଁକୁ ଖୋଲି ତାଙ୍କୁ ଖାଇବାକୁ ଦିଅନ୍ତି । ଶ୍ରମିକ ଓ ପୁରୁଷ ମହୁମାଛିମାନେ ଜନ୍ମ ପରେ ନିଜ ନିଜ କାମରେ ଲାଗିଯାନ୍ତି ।

କ୍ରମଶଃ ବସାଟିରେ ମହୁମାଛିଙ୍କର ସଂଖ୍ୟା ଯଥେଷ୍ଟ ବଢ଼ିଯାଏ । ପୁରୁଣା ରାଣୀ ମହୁମାଛିଟି ପ୍ରାୟ ୨୦ ହଜାର ଶ୍ରମିକ ମହୁମାଛିଙ୍କୁ ଧରି ଏକ ନୂଆ ବସା ଗଢ଼ିବାକୁ ଚାଲିଯାଏ । ବଳକା ରାଣୀଙ୍କ ମଧ୍ୟରୁ ହୃଷ୍ଟପୁଷ୍ଟ ଥିବା ରାଣୀଟିଏ ବସାରୁ ବାହାରେ । ସେ ପ୍ରଥମେ ଅନ୍ୟ ରାଣୀଗୁଡ଼ିକୁ ମାରି ଦିଏ । ତା'ପରେ ସେ ପୁରୁଷ ମହୁମାଛି ସହ ବାହାରକୁ ଉଡ଼ିଯାଏ । ମିଳନ ପରେ ସେ ବସାକୁ ଫେରିଆସେ । ଏଥର ସେ ଅଣ୍ଡା ଦେବା ପାଇଁ ଯୋଗ୍ୟା ଦେଇ ଯାଇଥାଏ । ସେ ଲଗାତାର ଅଣ୍ଡା ଦେବାରେ ଲାଗେ । ଦଳଟିରେ ନୂଆ ଜୀବନର ସଂଖ୍ୟା ବଢ଼ିଚାଲେ ।

## ବର୍ଷା ଗାୟକ ବେଙ୍ଗର କାହାଣୀ

ଏ ଯାଏଁ ତୁମେ ମଣିଷ, ଚଢ଼େଇ, କୀଟ, ଆଦିଙ୍କର ଭୃଣର ବିକାଶ ବିଷୟରେ ଶୁଣିଥିଲ । ମଣିଷର, ଭୃଣ ମା' ପେଟ'ଭିତରେ ବଢ଼େ । ଚଢ଼େଇ, କୀଟ ଆଦିଙ୍କର ଭୃଣ ଅଣ୍ଡା ଭିତରେ ବଢ଼ିଥାଏ । ତେଣୁ ତୁମେ ଭୃଣଟିର ବିକାଶଧାର ବା ମୋ ଆରମ୍ଭକୁ ଦେଖି ପାରି ନ ଥାଅ । କିନ୍ତୁ ଏବେ ମୁଁ ତୁମକୁ ଭୃଣର ବିକାଶକୁ ସ୍ପଷ୍ଟ ଭାବରେ ଦେଖାଇପାରିବି । ବେଙ୍ଗ ଅଣ୍ଡାରେ ତୁମେ ଏହାକୁ ଭଲ ରୂପେ ଲକ୍ଷ୍ୟ କରିପାରିବ ।

ମୋର ଆରମ୍ଭ ବେଳକୁ ଫେରିଯିବା । ବର୍ଷା ଦିନ ଆସିଥାଏ । ଅଣ୍ଡିରା ବେଙ୍ଗ ବର୍ଷା ପାଗକୁ ମୁଖରିତ କରି ଗୀତ ଗାଉଥାଏ । ମାଈ ବେଙ୍ଗ ଗୀତ ଶୁଣି ତା ପାଖକୁ ଯାଏ । ଦୁହିଁଙ୍କର ମିଳନ ହୁଏ ଓ ମୁଁ ଅଣ୍ଡା ରୂପରେ ଜନ୍ମ ନିଏ । ବର୍ଷାଦିନେ ପୋଖରୀ ବା ପାଣି ଜମିଥିବା ଜାଗାରେ ଫେଣପରି ମେଞ୍ଚା ମେଞ୍ଚା ମଞ୍ଜି ଭାସୁଥାଏ । କେତେକ ବେଙ୍ଗଙ୍କ ଅଣ୍ଡା ସୂତା ପରି ଲମ୍ବା ନଳୀ ଭିତରେ ଗୁନ୍ଥି ହେଲା ପରି ସଜାଇ ହୋଇ ରହିଥାଏ । ଗୋରିଷ ଆକାରର ଏହି ମଞ୍ଜି ଭିତରେ ଗୋଟିଏ ନାଭିକେନ୍ଦ୍ର ଓ କିଛି ଖାଦ୍ୟ ସାଇତା ହୋଇଥାଏ । ତା ଭିତରେ ମୁଁ ଆରାମରେ ଶୋଇଥାଏ ।

ଦିନେ ଦୁଇଦିନ ଭିତରେ ଏହି କୋଷଟି ଭିତରେ ବିଭାଜନ ଚାଲେ । ଏହା ସ୍ୱଚ୍ଛ

ଥିବାରୁ ଏହାର ବିଭାଜନକୁ ବାହାରୁ ଖାଲି ଆଖି ଓ ଯବକାଚରେ ବି ଦେଖି ହୁଏ । ଚାରିଦିନ ବେଳକୁ ଭୃଣଟି ବେଶ୍ ଲମ୍ବାଳିଆ ହୋଇଯାଏ । ଏହାର ଗୋଟିଏ ପଟ ମୁଣ୍ଡ ଓ ଆରପଟଟି ଲାଞ୍ଜ ପରି ଦେଖାଯାଏ । ଏ ସମୟରେ ତା'ର ଗାଲିସି ଥାଏ । ଏହା ଏକ ଛୋଟ ମାଛ ପରି ଦେଖା ଯାଉଥାଏ । ଏ ଯାଏଁ ଏହା ଅଣ୍ଡା ଖୋଳଟି ଭିତରେ ହିଁ ଥାଏ । କ୍ରମଶଃ ଏହାର ଆକାର ବଢ଼ି ଚାଲେ । ଅଣ୍ଡା ଭିତରେ ଜାଗା ନିଅଣ୍ଟ ହୁଏ । ଭିତରର ଖାଦ୍ୟ ବି ସରିଆସେ ।



ପ୍ରାୟ ୧୦ ଦିନ ବେଳକୁ ଅଣ୍ଡାକୁ ଫଟାଇ ବେଙ୍ଗଫୁଲା ବାହାରକୁ ଚାଲିଆସେ । ମତେ ଭାରି ମଜା ଲାଗେ । ଏଥର ମୁକ୍ତ ଭାବରେ ସେ ମାଛଟିଏ ପରି ପାଣିରେ ପହଁରିପାରେ । କେବେ ଦେଖିଛ, ଏହି ଅବସ୍ଥାର ବେଙ୍ଗଫୁଲାଟିକୁ ? ବଡ଼ ମୁଣ୍ଡଟି ପଛରେ ସରୁଆ ଲାଞ୍ଜଟି ଦ୍ରୁତ ବେଗରେ ହଲୁଥାଏ । ବାହାରୁ ଦେଖିବାକୁ ଖୁବ୍ ମଜା ଲାଗେ । କିନ୍ତୁ ଏ ଯାଏଁ ପାଟିଟି ଖୋଲି ନ ଥାଏ ।

ଅଣ୍ଡା ଭିତରେ ସାଇତା ଖାଦ୍ୟର ଶେଷ ଭାଗଟି କାମରେ ଲାଗିଯାଏ । ଦୁଇ ତିନି ଦିନ ପରେ ପାଟି ଖୋଲେ । ପାଣିର ଛୋଟ ଛୋଟ ଜୀବ, ଶିଉଳି ଆଦିକୁ ସେ ମନ ଖୁସିରେ ଖାଇଯାଏ । ସେ ଆକାରରେ ବଢ଼ିଚାଲେ । ତା'ର ନାକ, ଆଖି ଆଦି ପରିଷ୍କାର ଭାବେ ଦେଖିହୁଏ । ଦେହ ଭିତରେ ବିଭିନ୍ନ ପ୍ରକ୍ରିୟା ବି ଭଲ ରୂପେ କାମ କରେ ।

ଦୁଇ ମାସ ବେଳକୁ  ଗାଲିସିଟି ଆଉ ଲୋଡ଼ା ହୁଏ ନାହିଁ । ପବନ ନିଆଆଣ ପାଇଁ ଫୁସଫୁସ୍‌ଟି କାମ କରେ । ଦେହର ପଛ ପାଖରେ ଦୁଇଟି ଗୋଡ଼ ଉଠେ । ସେ ଶିଉଳି ଆଦି ଖାଇବା ବନ୍ଦ କରିଦିଏ । ଛୋଟ ଛୋଟ ପୋକ ହିଁ ତା'ର ମୁଖ୍ୟ ଖାଦ୍ୟ ହୁଏ । ତିନି ମାସର ହେଲା ବେଳକୁ ଆଗ ଗୋଡ଼ ଦୁଇଟି ବି ଗଜେଇଉଠେ । କିଛି ଦିନ ପାଇଁ ସେ ଖିଆ କମାଇଦିଏ । ଲାଞ୍ଜରେ ସଞ୍ଚିତ ହୋଇଥିବା ଖାଦ୍ୟସାରଗୁଡ଼ିକ ତାକୁ ବଳ ଯୋଗାଏ । କିଛି ଦିନ ଭିତରେ ଲାଞ୍ଜଟି ଦେହରୁ ଅଲଗା ହୋଇଯାଏ ।

ଏଥର ଏହା ଏକ ବେଙ୍ଗ ଆକାର ପାଇସାରିଥାଏ । କୁନି ବେଙ୍ଗଟି ଶୁଖିଲା ମାଟି ଉପରେ ଡ଼େଇଁ ବୁଲେ । ମତେ ଆହୁରି ମଜା ଲାଗେ । ଏଥର ସ୍ଥଳ ଭାଗର ଜୀବନ । ବାହାରେ ଡ଼େଇଁ  ଡ଼େଇଁ ସେ ପୋକ ଜୋକ ଖାଇଯାଏ । ଆକାରରେ ବି ବଢ଼ିଚାଲେ । ମନ ହେଲେ ମୁଁ ପାଣିରେ ବି ଘେରାଏ ବୁଲି ଆସେ । ସେଠାରେ ବି କେତେ ଖାଦ୍ୟ ପାଇଯାଏ । ଏପରିକି ପ୍ରାୟ ୪ବର୍ଷ ବିତାଇଲା ପରେ ମୁଁ ମୋର ପର ପୀଢ଼ିଟି ପାଇଁ ମୁଣ୍ଡି ମାରେ । ଛୁଆ ଜନ୍ମ କରେ ।

## ମୁଁ ଗୁଣ୍ଡୁରୀ .... ଏକ ବୟସ୍କ କୀଟ ନୁହେଁ

ମୋ ସାଙ୍ଗରେ ଲାଗିବାକୁ ତୁମକୁ ଭାରି ମଜା ଲାଗେ । ନୁହେଁ ? ମୋ  ବାଲି ଗାତରେ କାଠି ପୂରାଇ ତୁମେ ମୋତେ ଧରିନିଅ । ମୋର ତଳମୁହାଁ ଚାଲି କୁଆଡ଼େ ତୁମକୁ ଖୁବ୍ କଉତୁକିଆ ଲାଗେ । ତୁମ ହାତ ପାପୁଲି ଉପରେ ଏଣେତେଣେ ଦଉଡ଼ି ମୁଁ ଲୁଚିବାକୁ ଚେଷ୍ଟା କରେ । କିଛି ସମୟ ପରେ ତୁମେ ବାଲି ଥିବା ଜାଗାରେ ମୋତେ ଛାଡ଼ିଦିଅ । ଗାତଟିଏ ଖୋଳି ପଶିଯିବା ଯାଏଁ ତୁମେ ହସ ହସ ମୁହଁରେ ମୋତେ ଅନାଇଥାଅ । ସମସ୍ତେ କହନ୍ତି ଗୁଣ୍ଡୁରୀ ପୋକ ।  ତୁମେମାନେ ଭାବୁଥିବ, ମୁଁ ଏକ କୀଟ; ସବୁବେଳେ ଏମିତି ମାଟି ତଳେ ଲୁଚି ରହିଥାଏ ।

ପ୍ରକୃତରେ ଏହା ମୋର ପିଲାବେଳ - ଲାର୍ଭା ସମୟ । ନିଉରୋପ୍ଟେରା ଜାତିର ମୁଁ ଏକ ଲାର୍ଭା । ଏହି ସମୟରେ ମୁଁ ଝୁରା ମାଟିରେ କାହାଳୀ ଆକାରର ଘରଟିଏ କରିଥାଏ । ଏହାର ମଝିରେ ସରୁବାଲି ତଳେ ମୁଁ ଶିକାରୀ ପରି ଛକି ବସିଥାଏ । ପିମ୍ପୁଡ଼ି ମୋର ଅତି ପ୍ରିୟ ଖାଦ୍ୟ । ମୋ ଜାଲ-ଗାତ ପାଖକୁ କୌଣସି ପିମ୍ପୁଡ଼ି ଆସିଲେ, ସେ ସିଧା ଗାତ ଭିତରକୁ ଗଳି ପଡ଼େ ।

ଗାତଟି ଏପରି ହୋଇଥାଏ ଯେ, ସେ ଯେତେ ଚେଷ୍ଟା କଲେ ମଧ୍ୟ ଉପରକୁ ଉଠିପାରେ ନାହିଁ । ସେ ଉପରକୁ ଉଠିବାକୁ ଚେଷ୍ଟା କଲେ ତା' ଗୋଡ଼ ଖସିଯାଏ ଓ ସରୁବାଲି ତା' ଉପରେ ଝଡ଼ି ପଡ଼େ । ସେ ଏପରି ସଂଘର୍ଷ କରୁଥିବା ବେଳେ ମୁଁ ଧୂଳି ଉଡ଼ାଇ ଝପଟି ଆସେ ଓ ମୋର ଦୁଇ ଧାରୁଆ ଶୁଣ୍ଢରେ ତାକୁ ମାଡ଼ି ବସେ । ମୁଁ ଏହି ବୟସରେ ପ୍ରବଳ ପିମ୍ପୁଡ଼ି ଆଦି କୀଟ ଖାଏ । ତେଣୁ ମତେ ଇଂରାଜୀ ଭାଷାରେ '' ପିମ୍ପୁଡ଼ି ଖିଆ '' ବୋଲି ବି କୁହାଯାଏ ।

କ୍ରମେ ମୋର ଆକାର ବଢ଼ିବାରେ ଲାଗେ । ବେଶ୍ ମୋଟାସୋଟା ହେଲାବେଳକୁ ମୋ ଦେହରେ ଚାରିଟି ପତଳା ଡ଼େଣା (କଙ୍କି ଡ଼େଣା ପରି) ଉଠେ । ମୋର ଗାତ ଛାଡ଼ିବା ସମୟ ଆସିଯାଇଥାଏ । ମୁଁ ମୋର ଶିକାର ଗାତଟିରୁ ବିଦାୟ ନିଏ । ଏଥର ମୋର ଚରାଭୂଇଁ ହୁଏ ଅନନ୍ତ ଆକାଶ । ମୁଁ ମନଖୁସିରେ ଆକାଶରେ ବୁଲେ । ଗଛ, ଘାସ, ଆଦିରେ ମୋର ଖାଦ୍ୟ (ଛୋଟ ଛୋଟ କୀଟ) ଥାଏ । ମୁଁ ଭୋକବେଳେ, ଏଥିରୁ କିଛି ଖାଇନେଇ ପୁଣି ଆକାଶକୁ ବାଟ କାଟେ ।



ଆକାଶରେ ଉଡୁଥିବା ପ୍ରଜାପତି, ଆଦି କୀଟ ପତଙ୍ଗ ଗଛ ପତ୍ରରେ ଅଣ୍ଡା ଦିଅନ୍ତି । ମୋର ଅଣ୍ଡା ଦେବା ସ୍ଥାନ ମାଟି, ଯେଉଁଠି ମୁଁ କିଛି ଦିନ ଧରି ରହିଥାଏ । ସମୟ ଆସିଲେ ମୁଁ ସୁରକ୍ଷିତ ଜାଗାଟିଏ ବାଛେ ଓ ମାଟିରେ ଗାତ ଖୋଳି ଅଣ୍ଡା ଦେଇଦିଏ । କିଛି ଦିନ ପରେ ଅଣ୍ଡା ଫୁଟି କୁନି କୁନି ଛୁଆ ବାହାରନ୍ତି । ସେମାନଙ୍କୁ ହିଁ ତୁମେ ଗୁଣ୍ଡୁରୀ ପୋକ କହିଥାଅ । କିନ୍ତୁ ଏହି ନୂଆ ଜୀବନଧାରାଟିଏ ସରଜିଲା ବେଳକୁ ମୋ କାଳ ପୂରି ଆସିଥାଏ । ଅଣ୍ଡା ଦେବାର ଅଳ୍ପ କିଛି ଦିନ ପରେ ମୁଁ ମରିଯାଏ । କିନ୍ତୁ ମୋର ନୂଆ ଭାଇଭଉଣୀଗୁଡ଼ିକ ପେଟ ପୂରାଇ ପିମ୍ପୁଡ଼ି ଖାଇବାରେ ବ୍ୟସ୍ତ ଥାଆନ୍ତି ।

.... ପ୍ରିୟ ବନ୍ଧୁମାନେ, ଏଥର ମତେ ଚିହ୍ନିଲ ? ତୁମେ ମତେ ଅସଂଖ୍ୟ ରୂପରେ ଦେଖୁଛ । ସମସ୍ତଙ୍କ ଭିତରେ ମୁଁ ରହିଥାଏ । ମୋ ପାଇଁ ସବୁ ଜୀବ ସମାନ । ମତେ ସାଇତି ରଖିବା ପାଇଁ ସମସ୍ତେ ଯଥା ସମ୍ଭବ ଯତ୍ନ ନିଅନ୍ତି । ଅବଶ୍ୟ ତୁମ ମଣିଷମାନଙ୍କ ପରି ଅନ୍ୟମାନେ ଏତେ ସୁରକ୍ଷିତ ନୁହନ୍ତି ।

ଏ ଯାଏଁ ମୁଁ କହିଚାଲିଥିଲି, ବିଭିନ୍ନ ଜୀବଜନ୍ତୁଙ୍କ ଭିତରେ ମୁଁ କିପରି କାମ କରିଚାଲିଥାଏ । କିନ୍ତୁ ମୁଁ ମୂଳ କଥାଟି ତୁମକୁ ଏ ଯାଏଁ କହି ନାହିଁ । ତାହା ହେଉଛି ମୋର କ୍ରମ ବିକାଶ । ତୁମେ ଜାଣିଛ ଏବେ ମୋ ବୟସ କେତେ ? ମୋର ବୟସ ଶୁଣିଲେ ତୁମେ ବିଶ୍ୱାସ କରିପାରିବ ନାହିଁ ।

ପ୍ରାୟ ୩୫୦ କୋଟି ବର୍ଷ । ହଁ, ଆଶ୍ଚର୍ଯ୍ୟ ଲାଗିଲେ ବି ଏହା ସମ୍ପୂର୍ଣ ସତ । ମଜା କଥା ଏଇଆ ଯେ, ଜୀବଜଗତର ଆଉ କୌଣସି ପ୍ରାଣୀ ମୋର ଆରମ୍ଭ କଥା ଜାଣନ୍ତି ନାହିଁ । କେବଳ ତୁମେ (ମଣିଷ) ମାନେ ହିଁ ଏହା ଜାଣିବାକୁ ଚାହିଁଛ, ଖୋଜିଛ, ପ୍ରମାଣ ପାଇଛ ଓ ବୁଝିଛ । ତୁମ ବିଜ୍ଞାନର ସୁବର୍ଣ ଧାରାଟି ହିଁ ଏ ଦିଗରେ ତୁମକୁ ବାଟ କଢ଼ାଇଛି ।

